ଉତ୍କଳିକା

# କାଚ ବଜ୍ରକର




ପଣ୍ଡିତ ଗୋଦାବରୀଶ ମିଶ୍ର

# କାଚ ବଜ୍ର କାଳ

୧

ମୁହଁଟାଯାକ ଖାଲି ରକ୍ତ ସରସର, କପାଳର ଚମ ଝୁଲିର ଆଖି ଉପରେ ଆସି ପଡ଼ିଛି; ଗାଲ ଦୁଇଟାରେ ଅଧେ ଅଧେ ମାଂସ ନାହିଁ—ଏହି ଅବସ୍ଥାରେ କିଶୋର ବାବୁଙ୍କୁ ଖଟିଆରେ ପକାଇ ଘରକୁ ଅଣାଗଲା। ଶାନ୍ତି ଦେବୀ ଦେଖିବା ମାତ୍ରେ, "ଏ ବୋଉ ଲୋ" ବୋଲି ଗୋଟାଏ ପାଟି କରି, କିଲିବିଲି ହୋଇ, ଦଶ ହାତ ଦୂରକୁ ଚଳାଇ, କ୍ଷଣକ ପାଇଁ ମୁହଁଟା ପଛକୁ ବୁଲାଇଦେଲେ। କେତେକ ସମୟ ପରେ ପୁଣି ପ୍ରକୃତିସ୍ଥ ହୋଇ ଶୁଶ୍ରୂଷାରେ ଆସି ଲାଗିଲେ। ତଥାପି ଗୋଡ଼ ହାତ ଥରୁଛି; କିଶୋର ବାବୁଙ୍କ ମୁହଁକୁ ସିଧା ଚାହିଁପାରୁନାହାନ୍ତି।

କିଶୋର ବାବୁ ଅଚେତନ ଅବସ୍ଥାରେ ଘରକୁ ଆସିଥିଲେ। ଚେତା ହେବା ସଙ୍ଗେ ସଙ୍ଗେ କହିଲେ, "ଶାନ୍ତି, ଆଜି ତୁମେ ବାପ ଘରକୁ ଚାଲିଯାଅ। ମୋର ଭଲ ହେବାକୁ କେତେ ଦିନ ଲାଗିବ କେଜାଣି। ଡାକ୍ତର ତ ରୋଜ ଆସି ଦେଖିବ; ଚାକର ବାକର ସେବା ଶୁଶ୍ରୂଷା କରିବେ; ତା ପରେ ମାଉସୀ ପୁଣି ଅଛନ୍ତି। ସୁଆରି ଗାଡ଼ି ବନ୍ଦ କରିଦିଅ; ଆଜି ଚାଲିଯାଅ। ସଂଧ୍ୟା ଆଗରୁ ଯାଇ ପହଞ୍ଚିବ। ଉଃ, ଆଉ କହିପାରୁନାହିଁ। ଏତିକିରେ ତଣ୍ଟି ଶୁଖିଗଲାଣି, ପାଟି ଟାଣିମାରିଯାଉଛି। ଆରେ, କିଏ ଅଛରେ!"

# ଖାଚ ବନ୍ଦ କର

ପାଖ କୋଠରୀରୁ ଏକାବେଳକେ ତିନି ଜଣଙ୍କ ପାଟି ଶୁଣାଗଲା, "ହଜୁର"।

"ଟିକିଏ ପାଣି ଦିଅ"। ତିନି ଜଣ ଯାକ ଅସ୍ତବ୍ୟସ୍ତ ହୋଇ ଧାଇଁଗଲେ; ଭୁଟଭୁଟ କହୁଲେ, "ପାଣି, ପାଣି, ପାଣି"। ପାଣି ପିଇସାରି କିଶୋର ବାବୁ ଆଦେଶ ଦେଲେ, "ଅଚ୍ଛା, ଯାଅ; ଆଜ ସୁଅର ଗଜଣ୍ଡ ଟିକେ କରିବାକୁ ମଟୁ ବାବୁଙ୍କୁ କହ।" ସ୍ୱର ଖସାଇ ପୁଣି କହିଲେ, "ଶାନ୍ତି, ଖାଦୁର! କଣ ପିଲା ହେଉଚ? ମାସ ଖଣ୍ଡିକ ପରେ ଗ୍ରୀଷ୍ମ ଆସିବ। ତୁମ ବାପା ଭାଇ କେତେ ଥର ଡାକି ଆସିଲେଣି; ଯାଉନାହଁ। ଏଥର ଗୋଟାଏ ସୁବିଧା ମିଳିଚି। ତୁମେ ଆସିଲା ବେଳକୁ ମୁଁ ଭଲ ହୋଇଯାଇଥିବି। ତୁମର ଏଠି ରହିବା କିଛି ଦରକାର ନାହିଁ। ରହିଲେ ଖାଲି ଖାଇବ ସିନା।"

"ନା, ମୁଁ ଖାଇବିନାହିଁ।" ଶାନ୍ତି ଦେବୀ ପଣତ କାନିରେ ଆଖି ଦିଓଟା ଛଳଛଳ ହୋଇ ପୋଛି ପକାଇଲେ।

"ଏତେ ବଡ଼ ପ୍ରତିଜ୍ଞାଟାଏ କରୁଚ, ରଖିପାରିବ ତ?"

"ରଖିବି, କେବେ ଖାଇବିନାହିଁ।"

"ଅଚ୍ଛା, ନ ଖାଅ; ଭଲ କଥା। ତେବେ ମୁଁ ଯାହା କହୁଚି, ଶୁଣ। ମୋ ଦେହରେ ଯେପରି ହେଉଚି, ଦେଖିଲେ ତୁମକୁ ଡର ମାଡିବ, ମନରେ ବିକାର ଆସିବ। ଘା ଘଣ୍ଟ ଗୁଡ଼ାକ କଣ ଭଲ କଥା? ଉଃ, ପୁଣି ପାଟି ଶୁଖିଗଲା।" କିଶୋର ବାବୁ ପୁଣି ଥରେ ପାଣି ପିଇଲେ। କହିଲେ, "ବୁଝିଲ ନା, ଶାନ୍ତି? ଆଉ ଆପତ୍ତି କରନାହିଁ। ମୋ କଥା ରଖ, ମୁଁ ଭଲ ପାଇଁ କହୁଚି।"

“ନା, ଏ ସଂସାରରେ ନ ଥିବା କଥା ତୁମେ କହୁଚ । ଯେ ପ୍ରାଣର ଈଶ୍ୱର, ତାଙ୍କୁ ଏପରି ଅବସ୍ଥାରେ ଛାଡ଼ି, ନାରୀ-ହୃଦୟ ଧରି, କେହି କେବେ ବାପଘରକୁ ଯାଇଚି, ନା ଯିବ ? ଅଉ ମତେ ବଳାଅନାହିଁ । ମୋ ହାତେ ବା କଣ ହବ ? ହେଲେ, ଏଇଟି ମୁଁ ପାଦତଳେ ବସିଥିଲେ, ମୋ ମନ ବୁଝିବ ।”

“ମୁହଁଟା ଦେଖିବାନାହିଁ ବୋଲି ପାଦ ପାଖେ ବସିଚ ନା କଣ ?”

“ଅଚ୍ଛା କୌତୁକ ସେତିକି ଥାଉ । ମୁଁ ଯିବାନାହିଁ । ମତେ ସେ କଥା ଆଉ କହନାହିଁ, ପ୍ରାଣେଶ୍ୱର ! ତୁମେ ତୁନି ହୋଇ ଶୁଅ; ପୁଣି ଶୋଷ କରିବ ସିନା ।”

---

## ୨

କିଶୋର ବାବୁ ଜଣେ ଖାନଦାନ ଘରର ପୁଅ । ଗରିବ ଘରକୁ ପଶିଲେ, ଷଜିଯୁ ହୋଇ ବସ୍ତ୍ରଚୂଡ଼ା କରନ୍ତି; ଧନୀ ଘରକୁ ଗଲେ, ଖାତ୍ରାଯୁକ୍ତ ହୁଅନ୍ତି । ଘରଟା ବହୁକାଳର ପୁରୁଣା ଘର । ତେବେ କାଳର ଗତିରେ ବର୍ତ୍ତିଛି ମାନ । ଏପରି କି ଦରିଦ୍ର ପ୍ରଜାମାନେ ଖଜଣା ଧରି ଆସି ରଜା ବୋଲି ସମ୍ବୋଧନ କରିବାକୁ ଆରମ୍ଭ କରିଛନ୍ତି ।

ବିଧାତାର ନିର୍ଦ୍ଦେଶ ଯେ ଯେଉଁଠାରେ ଯେତିକି ଅଭାବ, ଖାଇବାକୁ ପେଟ ସେହିଠାରେ ସେତିକି ବେଶି; ଆଉ ଯେଉଁଠାରେ ଖାଦ୍ୟପେୟ ଚର୍ବ୍ୟ ଚୋଷ୍ୟ ଲେହ୍ୟ ଭଣ୍ଡାରରୁ ଉଚ୍ଛୁଳିପଡ଼ୁଛି, ସେଠାରେ ଖାଇବାକୁ କେହି ନାହାନ୍ତି । ପିତାମାତାଙ୍କ ମୃତ୍ୟୁ ପରେ, ନିଜର ବୋଲି ଜଣେ କାହାକୁ

ଅଣି ଘରେ ରଖିବାକୁ କିଶୋର ବାବୁ ଯେତେବେଳେ ଅଣ୍ଡି ଭୁଲିଗଲେ, ଜଣେ ବୁଢ଼ୀ ମାଉସୀଙ୍କ ଛଡ଼ା ଅଉ କେହି ଘଟିଲେନାହିଁ। ସେହି ମାଉସୀଙ୍କ ଅଣି ଘରେ ମାଙ୍କ ଆସନରେ ବସାଇଲେ। କୃଷୀର ସମ୍ପଦ ଧାନକୁ ନିରାପଦରେ ରଖିବା ପାଇଁ ଧବଳୀ ବଙ୍ଗରେ ରହୁଛି ଖଣି। ଖଣିରେ ଧାନ ଭର୍ତ୍ତି ହୋଇଗଲେ, ପୃଥିବୀପୃଷ୍ଠରେ ଅଉ ଉଚ ନୀଚ କିଛି ରହେନାହିଁ, ସବୁ ସମତଳ ହୋଇଯାଏ। ମାଉସୀ ବାଲ-ବିଧବା। ତାଙ୍କ ହୃଦୟରେ ନିଜର ଅପତ୍ୟ ନିମନ୍ତେ ଯଠି ଯେଉଁ କାନ୍ଥକୁସ ତାଙ୍କ ଜନ୍ମକାଳରୁ ଗଢ଼ି ରଖିଥିଲା, କିଶୋର ବାବୁଙ୍କ ମୂର୍ତ୍ତି ତାର ଶୂନ୍ୟତା ଦୂର କରିଦେଲା।

କିଶୋର ବାବୁ ଅଉ ଯାହା ହୁଅନ୍ତୁ ନୁହନ୍ତୁ, ଜଣେ ଭଲ ଶିକାରୀ। ବ୍ଲେଟ ବନ୍ଧୁ, ଶସ୍ତା ଦାମିକା—ଗୁଡ଼ିଏ ଖଣ୍ଡ ବନ୍ଧୁକ ରଖିଛନ୍ତି। ନିଜେ ତ ଶିକାର କରନ୍ତି, ସୁବରବାକରଙ୍କୁ ମଧ୍ୟ ଶିଖାଇ ଦେଇଛନ୍ତି। ନୀତି ମାନି ଚଳିବା ତାଙ୍କ ଘରର ଗୋଟାଏ ସିଦ୍ଧି; ବିଶେଷରେ ଶିକାର ବିଷୟରେ। ସେ କହନ୍ତି, "ମଞ୍ଚାରେ ବସି ଗୁଳି କରିବ ତ, ଶିକାରୀ କଣ ?, ବାଘ ସେ ଠାକୁ ଅମେ ଗୋଟାଏ ଲଢ଼ାଲଢ଼ି ହେଲେ, କିଏ କାହାକୁ ମାରନ୍ତା, ଦେଖନ୍ତେ। ଏବେ ଗୁଳି ତ କରିବା, ବାଘ ପାଖରୁ ପାଏ ବାଟରେ ରହି, ତା ପରେ ପୁଣି ଗଛେ ହାତ ଉଞ୍ଚ ମଞ୍ଚାରେ ବସିବା। କି ଶିକାର କି ? ସର୍କସ ବାଘକୁ ପଞ୍ଜୁରି ଭିତରେ ଗୁଳି କଲେ ତ ହୁଅନ୍ତା।" ସେ ଜନ୍ତୁକୁ ପଛରୁ ବା ପାଖି ଫେରିଥିବା ବେଳେ ମାରନ୍ତିନାହିଁ, ମୁହାଁମୁହିଁ ଠିଆ ହୋଇ, ଯୋଦ୍ଧା ସହିତ ଯୋଦ୍ଧା ଲଢ଼ିଲା ପରି, ଗୁଳି

କରନ୍ତି । ତାଙ୍କ ସଙ୍ଗେ ଯେତେ ଲୋକ ଯାଆନ୍ତି, ବନରୁ ଫେରିବା ପର୍ଯ୍ୟନ୍ତ ଦାଇଁ ଦେବତାଙ୍କୁ ଜଣାଉଥାନ୍ତି ।

କିଶୋର ବାବୁଙ୍କ ବୈଠକଖାନାରେ ଟଙ୍କା ଟେବୁଲ ଆଦି ଯାହା ରହିବା କଥା ସବୁ ତ ଅଛି; କିନ୍ତୁ ଅଧିକ ଅଛି ମସ୍ତ ବଡ଼ ବଡ଼ ବାଘ ଛାଲ । ଚଟାଣ, କାନ୍ଥ—ସବୁ ବାଘ ଛାଲରେ ଆବୃତ । ଦେଖିଲେ ମନେ ହୁଏ, କିଶୋର ବାବୁ ସତେ ଅବା ଗୋଟାଏ ଫୁଟିକରେ ଦଶଟା ବାଘ ଜଡ଼ାଇ ଦେଇପାରିବେ ।

ଦେତେକ ଦୂରରେ ଗୋଟାଏ ବାଘ ମାଡୁଥିଲା । ପୂର୍ବଦିନ ସଞ୍ଜରେ କିଶୋର ବାବୁ ତାକୁ ଶିକାର କରିବାକୁ ଯାଇଥିଲେ । ସେ ଗୋଡ଼ରେ ବୁଟଯୋତା ପିନ୍ଧିଛନ୍ତି, ପିନ୍ଧାଲୁଗା ଫେରିକରି ମାରିଛନ୍ତି । ଦେହରେ ଗୋଟାଏ ମୋଟା ଶୀତଦିନିଆ କମ୍ବଳ କୁରୁତା । କୁରୁତା ଉପରେ ପଇତା ପରି ଗୁଳିର ଗୋଟାଏ ମାଳ ବାଁ କାନ୍ଧରୁ ଡାହାଣ ଜଙ୍ଘ ପର୍ଯ୍ୟନ୍ତ ଝୁଲିରହିଛି । ବନ୍ଧୁକଟାକୁ ଡାହାଣ ହାତରେ ଧରି କିଶୋର ବାବୁ ଛପି ଛପି ଚାଲିଛନ୍ତି । ଆଖି ଦୁଇଟା ରହିଛି ପ୍ରତ୍ୟାଶିତ ବାଘ ଉପରେ; ସମ୍ମୁଖରେ ଦେଖିବା ମାତ୍ରେ, ଫାଏର କରିବେ; ବନ୍ଧୁକରେ ଗୁଳି ଚଢ଼ାହୋଇ ରହିଛି । ସଙ୍ଗୀ ଶିକାରୀମାନେ ଆଖପାଖରେ ନିଜ ନିଜ ବାଟ ଧରି ଚାଲିଛନ୍ତି ।

କିଛି ଦେଉଁଅଡ଼େ ନାହିଁ, ହଠାତ୍ ଭରପଟରୁ ଦୁଇ ପଛ ଗୋଡ଼ରେ ଠିଆ ହୋଇ, ଆଗ ଗୋଡ଼ ଦୁଇଟା ମନୁଷ୍ୟର ହାତ ପରି ଟେକି, ଗୋଟାଏ ଜନ୍ତୁ ମାଡ଼ି ଆସିଲା । କିଶୋର ବାବୁ ବୁଝିନେଲେ ଯେ ଗୋଟାଏ ଭାଲୁ ଖୁବ୍ ସୁବିଧା ପାଇ-ଯାଇଛି । ଭାଲୁ ମନୁଷ୍ୟ ପରି କୁସ୍ତି କରେ ବୋଲି କିଶୋର ବାବୁ

ଭାଲୁ ଶିକାର କରନ୍ତିନାହିଁ । କହନ୍ତି, "ଗୁଳି ବାଜିଲେଇ ମରିବ । ମୁଁ ଭାଲୁ ଛୁଇଁ ମିଛ ନାଇଁ ।" କିନ୍ତୁ ଭାଲୁ ତ ବୁଝିବ ନାହିଁ ଯେ କିଶୋର ବାବୁ ବାଘ ଶିକାର କରନ୍ତାକୁ ଆସିଛନ୍ତି; ତେଣୁ ତାର ତାଙ୍କୁ ନ ଛୁଇଁବା ଉଚିତ । ଅଗ୍ରଭାଗ କରିବା ସଙ୍କାଶେ କିଶୋର ବାବୁ ଗୋଟାଏ ଗୁଳି ଫାଏର କଲେ । ଗୁଳିଟା ଭାଲୁର ଜାନୁରେ ବସିଗଲା । ମାତ୍ର ମରିବା ପୂର୍ବରୁ ଭାଲୁ କିଶୋର ବାବୁଙ୍କୁ ନିଜର ପରାକ୍ରମ ଦେଖାଇ-ଦେଲା । ଗୁଳି ଶବ୍ଦରେ ଜଙ୍ଗଲତମାମ ପ୍ରତିଧ୍ୱନିତ ହୋଇ ଉଠିଲା । ବାଘ ମରିଥିଲା ବରଂ, କିଶୋର ବାବୁଙ୍କ ଗୃହକ-ବାକର ଗୃହଅଙ୍ଗ ଖୁସିରେ ଆସି ଛୁଣ୍ଡ ହୋଇଗଲେ ।

---

୩

ଡାକ୍ତର ଆସି ପହଁଚି ବାନ୍ଧିଛନ୍ତି, ଚମ ସିଲେଇ-କରିଛନ୍ତି; ଔଷଧ ଦେଇଛନ୍ତି, ଘୁତ ଓ ମଳ ମୂତ୍ର ପରୀକ୍ଷା କରି କହିଛନ୍ତି ଯେ କିଛି ଦୋଷ ନାହିଁ; ପଥ୍ୟ ବତାଇଛନ୍ତି; ମାସକ ଭିତରେ ସଂପୂର୍ଣ୍ଣ ଆରୋଗ୍ୟ ହୋଇଯିବ ବୋଲି ଆଶ୍ୱାସନା ବାଣୀ ଶୁଣାଇଛନ୍ତି । ପୂର୍ବ ଦିନର କାତରତା ଆଉ ନାହିଁ । କଥା କହୁ କହୁ ପାଟି ଶୁଖି ଯାଉନାହିଁ । ମୁହଁରୁ ହସ ବାହାରିଲାଣି । କିଶୋର ବାବୁ ଥରେ ଅଧେ କହୁ ସାରିଲେଣି, "ମୁଁ ଶେଯରୁ ଉଠେ, ସେ ବାଘଟାକୁ ଦେଖିବ । ଭାଲୁଟାମୁଣ୍ଡା ମତେ କେତେ ଦିନ କାବୁ କରି ପକେଇବଣିବ ? ମୁଁ ତ ସାପ ମନ୍ତ୍ର ଜାଣିମା ଲୋକ; ସାମାନ୍ୟ ବଣ୍ଟୁ ମତେ କଣ କରିବ ?"

ଶାନ୍ତି ଦେବୀ ବସି ଗୋଡ଼ ଅଉଁସୁଥିଲେ । କହୁଲେ, "ହିଁ, କାଲି ପ୍ରଥମେ ଦେଖିଦେଲା ବେଳେ ମୁଁ ବଡ଼ ଘୃଣାଅଁ

ହୋଇଯାଇଥିଲି । ମତେ ତ ଦଶ ଦିଗ ଅନ୍ଧାର ଦିଶିଗଲା । ଝିଅ, କି ରକ୍ତ ବୋହୁ ନ ଥିଲା । ତାରପରୁ ମୁହଁଟିକି ଚଣ୍ଡାଳ ଖାଲି କଣ କରିନଦେଲା ? ଭୁବନେଶ୍ୱରରେ ସିନା ରକ୍ଷା କରିଦେଲେ ।”

“ତୁମକୁ ଅଗ ରକ୍ଷା କଲେ; ତୁମ ଛାତି ଫାଟିନଗଲା ! ମଣିଷ ଜନ୍ମ ପାଇଥିଲ କାହିଁକି ?”

“ସତେ କଣ ଆମେ ନାରୀ ଜାତିଟା ଏଇପରି ଦୁର୍ବଳ ନା ?”

“ ସେଥିପାଇଁ ପରା ପଣ୍ଡିତମାନେ ତୁମ ଜାତିକୁ ଅବଳା ନାଁ ଦେଇଛନ୍ତି । ମୋ କଥା ରଖ । ମାଉସୀ ତ ମଧ୍ୟ ଶୁଣି ହଁ କଲେ ।”

କିଶୋର ବାବୁ ଆଉ କିଛି କହିବା ପୂର୍ବରୁ କଥାଟାକୁ ବାଁ ରେଇଦେବା ପାଇଁ, ଶାନ୍ତି ଦେବୀ କହିଲେ, “ଆଛା, କହ ଦେଖି, ଗୋଟାଏ ଜାତିର ଦୋଷ କଣ ? ଏଟା ଶ୍ରେଣୀ-ବିଦ୍ୱେଷରେ ପଡ଼ିଯିବ । ତୁମେ ଜାଣନାହିଁ, ଏଇ ଜାତିରେ ତ ପୁଣି ଦୁର୍ଗାବତୀ ବାହାରିଥିଲେ ?”

“ଜାଣେ ଗୋ ଜାଣେ; ପଚାଶ ବର୍ଷରେ ଗୃଲଶ କୋଟିରୁ ଗୋଟିଏ ହେଲେ ଦେଖେଇଲ । ଆଉ ଗୋଟାଏ ନାଁ କହ ଦେଖି ।”

“କହୁଚି, କହୁଚି—।” ଶାନ୍ତି ଦେବୀ ମନେ ମନେ ଭାବିହେଲେ, ଯେପରି କି ସହସ୍ର ନାମ ଅଗ ଜିଭରେ ଅଛି, ଅଥଚ ମନେ ପଡ଼ୁନାହିଁ ।”

“ କହି ଦିଅ, ‘ଶାନ୍ତି ଦେବୀ’ । ସହଜରେ ଛୁଟିଯିବ । ଖାଲି ବାଜେ କଥା ଗୁଡ଼ାଏ କହୁଚ । ତୁମ ଭାଇଙ୍କି ମୁଁ କହିଲି ।

ତୁମେ ସବୁ ଅଡ଼୍ ଜିଥାଆକୁ ବଗୃର କର୍ ମତ ଦେଲେ । ଆଜ ତୁମେ ଏକା ଅମତ କରନାହିଁ । ଏଥା ଗାଲି ନାଙ୍ଗର କଥା ନୁହେ । ଭ୍ରାଇ ବାଲ୍ ସବୁକୁ ଯିବେ, ତାଙ୍କ ସାଙ୍ଗେ ଗ୍ଲି-ଯାଅ ।"

କିଶୋର ବାବୁ ଏବଂ ଶାନ୍ତି ଦେବୀଙ୍କ ବିବାହ ବର ସଙ୍ଗେ କନ୍ୟାର ବିବାହ ନୁହେ, ଦୁଇଟି ବ୍ୟକ୍ତି ଭିତରେ ପରସ୍ପର ସହିତ ଛନ୍ଦାଛନ୍ଦ ନୁହେ, ପାତ୍ର ପାତ୍ରୀଙ୍କର ସହଜ-ବୋଧ ହାତଗଣ୍ଠି ନୁହେ । ତାହା ହେଉଛି ସୌନ୍ଦର୍ଯ୍ୟ ସହିତ ସୌନ୍ଦର୍ଯ୍ୟର ମିଳନ, ଗୋଟାଏ ଅନନ୍ତ ଆକାଂକ୍ଷା ସହିତ ଆଉ ଗୋଟାଏ ଅନନ୍ତ ଆକାଂକ୍ଷାର କୋଳାକୋଳି, ଗୋଟାଏ ଅତୃପ୍ତ ତୃଷ୍ଣା ସଙ୍ଗେ ଆଉ ଗୋଟାଏ ଅତୃପ୍ତ ତୃଷ୍ଣାର ମିଶାମିଶି, କ୍ଷୀର ସମୁଦ୍ର ଓ ମଧୁ ସମୁଦ୍ର ମଧ୍ୟରେ ପରସ୍ପର ଆଲିଙ୍ଗନ । କିଶୋର ବାବୁଙ୍କ ପକ୍ଷରୁ ମାଉସୀ ଯେ କନ୍ୟା ଦେଖି ଯାଇଥିଲେ, ତାହା କେବଳ ସାମାଜିକ ସୌଜନ୍ୟର ଅନୁରୋଧରେ । ଅର୍ଜ୍ଜୁନ ଚମ୍ପତିରାୟ କନ୍ୟାର ବିବାହରେ ସମ୍ମତ ଦେଇଥିଲେ, ଶାନ୍ତି ଦେବୀଙ୍କର ସୌନ୍ଦର୍ଯ୍ୟ ପିପାସାର ପ୍ରତିରୂପ ସ୍ୱରୂପ ମାତ୍ର । ଦୁହିଁଙ୍କର ବିବାହ ଅନେକ ଦିନୁ ହୋଇସାରିଥିଲା, ପବନର ହିଲ୍ଲୋଳରେ, ଦୂରତାର ବନ୍ଧନରେ, ଯେତେବେଳେ କି ଦୁହେଁ ଦୁହିଁଙ୍କର ନିଜ ନିଜ ବେଷ୍ଟନୀ ଭିତରେ ରହି, ପରସ୍ପରର ସୌନ୍ଦର୍ଯ୍ୟର ନୀରବ ଉପାସନାରେ, ପରସ୍ପର ପ୍ରତି ପ୍ରୀତିପୂର୍ଣ୍ଣ ସୂତ୍ର ବଢ଼ାଇବାରେ ଲାଗିଥିଲେ ।

ଶାନ୍ତିଦେବୀଙ୍କର ଧାରଣା ଯେ ବିଧାତା ପୃଥିବୀରେ ସବୁ ମନୁଷ୍ୟଙ୍କୁ ଗଢ଼ିସାରି, ସେମାନଙ୍କ ଗଠନକଳା ବିଷୟରେ

ଯାବତ ସମାଲୋଚନା ଶୁଣିଲା ପରେ, କିଶୋର ବାବୁଙ୍କୁ ଗଢ଼ିଛନ୍ତି; ତେଣୁ ତାଙ୍କ ହୃଦୟରେ ଅପାଦମସ୍ତକ ଗୋଟିଏ ଶ୍ରଦ୍ଧା ଖ୍ୟାଣ ନାହିଁ। ଏ ଧାରଣାର ଉତ୍ତରରେ କିଶୋର ବାବୁ ହସି ହସି କହନ୍ତି, "ମାନ ଭୁଲିଯାଉଚ, ଶାନ୍ତ, ତୁମକୁ ଗଢ଼ିବା ତା ପରେ ପୁଣି ସାତ ବର୍ଷ କାଳ ନିଜର ହାତ ଧର୍ଣ୍ଣ ସତ୍ତ୍ୱ ଜଣ ଉପରେ।" ମାନବ ଜୀବନରେ ସୌନ୍ଦର୍ଯ୍ୟର ଗୋଟାଏ ଉଚ୍ଚ ସ୍ଥାନ ରହିଛି। ଜନକପୁର ଜମିଦାରଙ୍କ ଘରେ କିଶୋର ବାବୁଙ୍କ ପାଇଁ ସେ ସ୍ଥାନଟି ଅଛି ଶାନ୍ତ ଦେବୀଙ୍କ ଅଙ୍ଗ ଲତିକାର କୁଞ୍ଜରୁ କୁଞ୍ଜରେ ଏବଂ ଶାନ୍ତ ଦେବୀଙ୍କ ପାଇଁ ରହିଛି ମଦନ ବାବୁଙ୍କ ସୌମ୍ୟ ସୁଠାମ ମୂର୍ତ୍ତିରେ। ବିବାହ ପୂର୍ବରୁ ଦୁହେଁ ଦୁହିଁଙ୍କର ସୌନ୍ଦର୍ଯ୍ୟର ପୂଜା, ପରସ୍ପରର ଅଜ୍ଞାତରେ, ଜୀବନର ପ୍ରେମାଞ୍ଜଳି ଢାଳି, ଦୀର୍ଘ ଚାରି ବର୍ଷ କାଳ କରିଛନ୍ତି। ତା ନୋହିଥିଲେ, ପୃଥିବୀର ପ୍ରଜାପତି ବଜାରରେ କିଏ କାହା ହାତେ ପଡ଼ିଥାନ୍ତା, କିଏ କହି ପାରିବ ?"

---

୪

ଏ ଘଟଣାର ଛ ବର୍ଷ ପୂର୍ବେ ଧନେ କଟକ ରାସ୍ତାରେ ଗୋଟିଏ ଗାଡ଼ିର ଘୋଡ଼ାଟା ଖୁବ୍ ଚମକିଲା। ସେ କୋଚବାନକୁ ମାନିଲା ନାହିଁ; କେତେବେଳେ ହେଁ ହେଁ ଚିତ୍କାର କରି ପଛ ଗୋଡ଼ରେ ଠିଆ ହୋଇ ଆଗ ଗୋଡ଼ ଦୁଇଟା ଉପରକୁ ଟେକିଲା ତ, ପୁଣି କେତେବେଳେ ପଛଉପଛାଇ ଗଲା। ଆଉ କେତେବେଳେ ରାସ୍ତା ଦୁଇ ପାଖ ଘରର ବାରଣ୍ଡାରେ ଯାଇ ଧକ୍କା ଲଗାଇଲା। କୋଚବାନ ହାତର ଲଗାମ ଛିଣ୍ଡିଏ ଛୋଡ଼ିଲା ହୋଇଗଲେ, ଅଗକୁ ଉଡ଼ିପିବାକୁ ଗୁହିଁଲା। ରାସ୍ତାର

ଲୋକେ କିଏ କେଉଁଆଡ଼େ ଅଡ଼େଇହୋଇଗଲେ । ଗାଡ଼ିଟାର ଦୁଇପଟ ଦରଜା ଝରକା ବନ୍ଦ ଅଛି । ଭିତରୁ ଗୋଟିଏ କୋମଳ କଣ୍ଠ ଶୁଭିଲା, "ମାମା, ତୁ କହୁଚୁ କଣ ? ସବୁ ଦିନ ତ ଅର ଘୋଡ଼ାକୁ ଅଣୁ; ଅଜ ଯାକୁ କାହିଁକି ଅଣିଲୁ ? ତୁ, ଓହ୍ଲାଇ ଘୋଡ଼ାଟାକୁ ପିଟାଇଦେ । ତୋ ବଳ ଭଲ ଜଣା ପଡ଼ିଲଣି ।"

"ମୁଁ କଣ ଓହ୍ଲାଇପାରୁଚି, ମଣିମା ? ଲଗାମ ଛାଡ଼ିଦେଲେ ଗାଡ଼ିଟାକୁ କୁଆଡ଼େ ନେଇ ପାଡ଼ିଦବ, ତାର କିଛି ଠିକ୍ ଠିକଣା ଅଛି ?"

ଅଧ ଘଣ୍ଟାକ ଉପରେ କଟିଗଲା । କଚୱାନର ବୁଦ୍ଧି ବଣା ହୋଇଗଲାଣି । ରାସ୍ତାର ଲୋକେ ଦୂରରେ ଠିଆ ହୋଇ ଚାହିଁଛନ୍ତି ଓ କଚୱାନକୁ କିଏ କ ପରାମର୍ଶ ଦେବାରେ ଲାଗିଛନ୍ତି । ଏପରି ସମୟରେ ଜଣେ ଯୁବକ ଗୋଟିଏ ବାଇସାଇକେଲରେ ଆସି ପହଞ୍ଚିଲେ । ସେ ସାଇକେଲଟାକୁ ଛାଡ଼ିଦେଇ, ଧାଇଁ ଆସି, ଘୋଡ଼ାର ଲଗାମଟା ଧରି ପକାଇଲେ । ବିଦ୍ୟାଳୟରେ ଶିକ୍ଷକଙ୍କଠାରୁ କାନମୋଡ଼ା ଖାଇ ଛାତ୍ର ମୁଣ୍ଡ ପୋତି ବସିଲା ପରି, ଘୋଡ଼ାଟା ସ୍ଥିର ହୋଇ ଠିଆ ହେଲା; ଆଉ ବୀରତ୍ୱ ଦେଖାଇଲାନାହିଁ । କଚୱାନ ଉପରୁ ଓହ୍ଲାଇ ଆସି ତାକୁ ପିଟାଇ ଦେବାକୁ ବସିଲା । ଯୁବକ ପଚାରିଲେ, "କଣ ଖାଲି ଗାଡ଼ି, ନା ଭିତରେ ଲୋକ ଲୋକ ଅଛନ୍ତି ?" କଚୱାନ ଉତ୍ତର ଦେଲା, "ମଣିମା, ସୁଅଣି ଅଛନ୍ତି ।"

"ଘୋଡ଼ାକୁ ଖୋଲି ଦେବୁ ତ, ଗାଡ଼ି ନେବୁ କିପରି ?" କଚୱାନକୁ ଉତ୍ତର ଦିଶିଲାନାହିଁ । ଯୁବକ ଘୋଡ଼ାକୁ କିଛି ସମୟ ଅଉଁସିଲେ, ତା ପିଠି ଅସ୍ତେ ଅସ୍ତେ ଥାପୁଡ଼ାଇଲେ,

ତା ମୁହଁରେ ହାତ ବୁଲାଇଲେ, ଦୁଇ ଗୁଚ୍ଛା ଚାଳକୁ ଫୁଟାଇଲେ । ଘୋଡ଼ା ଗୋଟାଏ ଆଦରର ସ୍ପର୍ଶ ଅନୁଭବ କରି ଧୀରେ ଠିଆ ହେଲା । ଦେଖିଲେ ମନେ ହେଲା, ସେ ଏବେ ନିଜର ଦାୟିତ୍ୱଟା ବୁଝିଛି । ତହୁଁ ଯୁବକ କୋଚବାନକୁ କହିଲେ, "ଏ ଘୋଡ଼ା ନୂଆ କିଣିଛ, ନା କଣ ? ଆଛା, ଏଥର ଚଲ । ଦେହରେ ଚାବୁକ ଲଗାଅ ନାହିଁ । କେତେ ଦୂର ଯିବୁ ?"

"ଅନନ୍ତପୁର ଜମିଦାରଙ୍କ ବସାକୁ, ମଙ୍ଗଳାବାଗ ।"

ଗାଡ଼ି ଚାଲିବା ଆଗରୁ ଗୋଟିଏ ଦ୍ୱାର ଅଧା ଫିଟିଲା । ଭିତରୁ ଯୋଡ଼ିଏ ପଦ୍ମର ଆଖି ଯୁବକଙ୍କ ଉପରେ ପଡ଼ିଗଲା । ଫଁକୋଚରେ ମୁହଁ ନଇଁଗଲା; ଗାଡ଼ିର ଦ୍ୱାରଟା ବନ୍ଦ କରିନେଲା ଯେପରି ଗୋଟିଏ ଚମ୍ପା ପ୍ରତିମାର ହାତ । ଦ୍ୱାରଟା ସତେ ଅବା କାଚରେ ତିଆରି, ତାହା ବନ୍ଦ ହେଲା ପରେ ମୁଦ୍ଧା ଯୁବକଙ୍କୁ ପ୍ରତିମାଟି ଅବିକଳ ଦିଶିବାକୁ ଲାଗିଲା ।

କୋଚବାନ ଯୁବକଙ୍କୁ ଜୁହାର କରି, କୃତକୃତ୍ୟ ହୋଇ, ଗାଡ଼ି ଚଳାଇବାକୁ ବସିଲା । ସେତେବେଳେ କହିଲା, "ବାବୁ, ଆପଣଙ୍କ ପରିଚୟ ଟିକିଏ କହିଥାନ୍ତୁ; ଭାଲେ ବଡ଼ ବାବୁ ପଚାରିବେ । ଆପଣ ଏତେ ଉପକାର କଲେ ।"

"ମୁଁ କନକପୁର ଜମିଦାରଙ୍କ ପୁଅ, କଲେଜରେ ପଢ଼େ ।"

ଗାଡ଼ି ପୂର୍ବମୁହାଁ ଚାଲିଲା । ଯୁବକ ବାଇସାଇକେଲ ଚଢ଼ି ସଡ଼କେ ସଡ଼କେ ପଶ୍ଚିମ ଆଡ଼କୁ ଗଲେ । କିନ୍ତୁ ସେହି ମୁହୂର୍ତ୍ତରୁ ଜଗତର ଅନନ୍ତ ମାର୍ଗରେ ଦୁଇଟି ଯୌବନର ପ୍ରବାହ ପରସ୍ପର ଆଡ଼କୁ ଛୁଟିବାରେ ଲାଗିଲା ।

---



ଶାନ୍ତି ଦେବୀଙ୍କର ବାପଘରକୁ ନ ଯିବା ସ୍ଥିର ହୋଇଛି । କିଶୋର ବାବୁ ନିଜର ବିକୃତ ମୁହଁ ତାଙ୍କ ଦୃଷ୍ଟିରୁ ଲୁଚାଇ ରଖିବାର ଉପାୟ ଯେତେବେଳେ ନୋହି ପାରିଲା, ଉଭୟେ ବିଚାରି ଅନ୍ୟ ଏକ ପ୍ରତିକାର ସ୍ଥିର କରିଛନ୍ତି । ଡାକ୍ତର ଶାନ୍ତି ଦେବୀଙ୍କ ଆଖିରେ ପକାଇବାକୁ ଏକ ଔଷଧ ଦେଇଛି । ତା ଫଳରେ ତାଙ୍କ ସବୁ ଜାଲୁଜାଲୁଆ ଦିଶୁଛି । କିଶୋର ବାବୁଙ୍କ ମୁହଁର କ୍ଷତଗୁଡ଼ାକ ଆଉ ତାଙ୍କ ଆଖିରେ ପଡୁନାହିଁ । ସେ ଦିନରାତି ଅନ୍ଧାରରେ ସ୍ୱାମୀଙ୍କ ପାଦତଳେ ବସିରହି ପାରୁଛନ୍ତି । ଡାକ୍ତର କହୁଛି ଯେ କିଶୋରବାବୁଙ୍କ କ୍ଷତ ଭଲ ହୋଇଯିବା ବେଳକୁ ଶାନ୍ତି ଦେବୀଙ୍କ ଦୃଷ୍ଟିଶକ୍ତି ପୁଣି ସାଧାରଣ ଅବସ୍ଥାକୁ ଫେରିଆସିବ ।

"ଏ ଗୋଟାଏ ପ୍ରକାର ହେଲା, ନା ଶାନ୍ତି ? ମୁଁ ତୁମକୁ ବାପଘରକୁ ଯିବାକୁ ବାଧ ସିନା କରୁଥିଲି; ମାତ୍ର ତୁମେ ଚାଲିଯାଇଥିଲେ, ମୁଁ କଣ ଏ ଶେଯରୁ ଆଉ ଉଠିଥାନ୍ତି ? ମୋର କଣ ପ୍ରକୃତରେ ଇଚ୍ଛା ଥିଲା ଯେ ତୁମେ ଯାଅ ? ତେବେ ମୋର ଭାରି ଭୟ ହେଉଥିଲା, ଗୋଟାଏ ବିକୃତ ମୁହଁ ଧରି ମୁଁ ତୁମ ପାଖେ ପାଖେ କିପରି ରହିବି ? ତୁମ ମନରେ ଯେବେ ବିକାର ଆସି ଯାନ୍ତା ? ତାହାହେଲେ ମୁଁ ରହନ୍ତି କୁଆଡେ ? ଛ ବର୍ଷ ତଳର କଥା ତୁମର ତ ମନେ ଅଛି । କେତେ ଥର ସେ କଥା ମତେ କହୁଚ । କଟକ ସହର ରାସ୍ତାରେ ତୁମେ ମୁହୂର୍ତ୍ତେ ମୋ ଅଚିହ୍ନା ମୁହଁଟା ଦେଖି ଭାବିନେଲ ଯେ ସତେ କଣ ଗୋଟାଏ ପୂର୍ଣ୍ଣିମା ରାତିର ଜହ୍ନ ଦେଖୁଚ । ଆଜି ମନେ ପଡୁଚି ନା ?

"ହଁ, ପଡ଼ୁଛି । କାଲି ପରି ତ ଲାଗୁଛି, ତୁମେ ଆସି ପହଞ୍ଚି ନଥିଲେ, ଗାଡ଼ି ସୁଦ୍ଧା ଘୋଡ଼ାଟା ମତେ ସଡ଼କ ତଳକୁ ଗଡ଼େଇଦେଇଥାନ୍ତା । ମୁଁ ଆଜି ଜନକପୁରକୁ ଆସିଥାନ୍ତି କି ?"

"ସେଇଥିପାଇଁ ତ ମୁଁ ଆସି ପହଞ୍ଚିଲି । ଆଉ ଦେଖିଲି କଣ ନା, ଅନନ୍ତପୁର ଜମିଦାରଙ୍କ ବଗି ଭିତରେ ଯେ ଟିଏ ଦରଫୁଟା ଗୋଲାପ କଢ଼ି କ୍ଷଣକ ପାଇଁ ମୁହଁଟି ଦେଖାଇ ପୁଣି ଲୁଚିଗଲା । ସେଇ ଦିନ ପରା ମୁଁ ଶିଖିଲି, ସୌନ୍ଦର୍ଯ୍ୟର ପୂଜା କଣ ।"

"ଆଉ, ମୁଁ ଯେପରି ଶିଖିଲି ତାର ଦଶ ବର୍ଷ ପରେ ! କି ବୁଝିଛ କି ? ହାତ ସିନା ଗାଡ଼ିଦୁଆରଟା ଖୋଲିଦେଲା । ନେତ୍ର ଗାଡ଼ି ଭିତରେ ସେଇ ପୁନିଅ ଜହ୍ନକୁ ଦେଖିଲାଗିଲା । କଚବାନ ପରେ କହିଲା, ଘର ପାଖେ ଗାଡ଼ି ରଖି ଦୁଆର ଫିଟାଇ ଦଶ ଥର ସେ ଡାକିଥିବ । ମୁଁ ତ ବସି ବସି କଣ ଭାବୁଛି । ଆହା, ସୌନ୍ଦର୍ଯ୍ୟ କି ପଦାର୍ଥ !"

"ସୌନ୍ଦର୍ଯ୍ୟ କଣ ଗୋଟାଏ ପଦାର୍ଥ, ଶାନ୍ତି ? ତା ସ୍ୱର୍ଗର ଅମୃତ; ମାତ୍ର ଆଖିକି ଦିଶେ ନାହିଁକି ହାତକୁ ଧରା ଦିଏନାହିଁ । କେବଳ ଆସ୍ୱାଦନରେ ବୁଝିହୁଏ ।"

"ଠିକ କହୁଛ, ପ୍ରିୟତମ । ଏ ଦୁଇ ବର୍ଷରେ ମୁଁ ବୁଝିପାରିଛି । ବିଧାତା ଆମକୁ ଗଢ଼ିଥିଲା, ଜଣକୁ ଆଉ ଜଣକ ପାଇଁ ସିନା ।"

"ଶାନ୍ତି, ବିଧାତା ଗଢ଼ିଛି ଅବଶ୍ୟ । ମାତ୍ର ଆମେ ତ ମନୁଷ୍ୟ ନୁହେଁ; ଆମେ ଦୁଇ ଜଣ ଦୁଇଟା ଅଶରୀରୀ ଉପାସକ;

ଅଜ, ସେ ଉପାସନାର ସାମଗ୍ରୀ ହେଉଛି ପରମେଶ୍ୱରଙ୍କ ସୌନ୍ଦର୍ଯ୍ୟ; ତେଣୁ ମୁଁ ତୁମକୁ ମୋର ଏ କ୍ଷତବିକ୍ଷତ ମୁହଁଟା ଦେଖାଇବାକୁ ଡରୁଥିଲି । ଏବେ ତ ତୁମେ ଅଜ ଦେଖି ପାରୁନାହଁ । ମନେ ମନେ ଖାଲି ଦେଖୁଥିବ ସେଇ ପୂର୍ଣ୍ଣିମୀର ଚନ୍ଦ୍ର । ନା ? କଣ କହୁଛ, କାନ୍ତି ?"

"ମତେ ଏବେ ଅଜ ବିଲକୁଲ୍ କିଛୁ ଦିଶୁନାହିଁ ।"

"ତା ହବ । ଡାକ୍ତର ଉଦ୍ୟାଟାର ଖୁବ୍ ବାହାଦୁର ଅଛୁ । ଦେଖ ନ, ମତେ ଏବେ ଅଠ ଘଣ୍ଟା ଭଲ ଲାଗିଗଲାଣି । ସତେ, କାନ୍ତି, ତୁମେ ମୋ କଥା ମାନି ଗୁଲି ଯାଇଥିଲେ, କଣ ହେଇଥାନ୍ତା ? ମୋ ଦେହଟା ଏତେ ବେଳକୁ ଅଠର ଖଣ୍ଡ ହୁଅନ୍ତାଣି । ଏବେ ମୁଁ ଭଲ ହୋଇ ଉଠିବି, ତୁମ ଆଖି ବି ଅଗ ପରି ହେଇଯିବ । ଅଜ ଚିନ୍ତା କଣ ।"

"ମୋ ଅଖି ତ ହବ, ପ୍ରିୟ; ତୁମେ କିପରି ଭଲ ହେଇ ଉଠ । ତୁମେ ଯେପରେ ପଶ୍ଚିବନ୍ଧୁଚ; ମତେ ଦିନକ ଯୁଗେ ପରି ଲାଗୁଚି ।"

"ତେବେ ତୁମେ ପୂର୍ଣ୍ଣିମୀ ଜହ୍ନଟାକୁ ଦିନକ ଭିତରେ ଯୁଗେ ଢାଲ ଦେଖନ୍ତ, ଅବଶ୍ୟ ଯଦି ମୋ ମୁହଁଟା ଭଲ ଥାଅନ୍ତା, ଅଜ ତୁମ ଅଖିକି ଦିଶୁଥାନ୍ତା । ଏଇ ତ ମଜା ।"

---

## ୭

କିଶୋର ବାବୁ ଝାଉଁଝୁଞ୍ଜ ହୋଇ ଶେଯରୁ ଉଠିଲେ । ମୁହଁ ପୂର୍ବ ପରି ହୋଇଗଲା । ଅକାଶ ଯେତେବେଳେ ମେଘମାଳାରେ ଅଚ୍ଛନ୍ନ ହୁଏ ଝଡ଼ତୋଫାନ ହେଉଥାଏ,

ଉପରକୁ ଚାହିଁଲେ ଚକ୍ଷୁ ଥରିଯାଏ। କିନ୍ତୁ ମେଘ ସ୍ତୂପ ଗଲା ପରେ ସୁନୀଳ ଅନନ୍ତ ଆକାଶଟା ମଧ୍ୟ ଶୂନ୍ୟ ବୋଧହୁଏ। କେବଳ କେତେ ଖଣ୍ଡ ଟୁକୁଟିଆ ଧଳା ବାଦଲ ତା ଦେହରେ ଭାସୁଥିଲେ, ଅଶିତ ପ୍ରତିଫଳନ ଦଶେ। ସୁରଚିତ ଫୁଲମାଳ ସୁନ୍ଦର ଦେଖାଯାଏ, ତହିଁରେ ମଝିରେ ମଝିରେ ଗୋଟିଏ ଗୋଟିଏ ସବୁଜ ପତ୍ର ଖଞ୍ଜାହୋଇଥିଲେ। ପ୍ରଶାନ୍ତ ସମୁଦ୍ରବକ୍ଷର ମାତୃସ୍ନେହ ହୃଦୟକୁ ସ୍ପର୍ଶ କରେ, କେବଳ ସେଥିରେ ଫେନିଳ ତରଙ୍ଗ କେତେ ଗୋଟି ନିଜ ନିଜର କ୍ଷୁଦ୍ର ମୂର୍ତ୍ତିମାନ ଟେକି ଉଠିଲେ। ସେହି ପରି କିଶୋର ବାବୁଙ୍କ ମୁଖମଣ୍ଡଳର କମନୀୟତା ବୃଦ୍ଧି ପାଇଲା ଓଠର ଦୁଇ ଗୁଚ୍ଛ ଗୋଟି ସାମାନ୍ୟ ଚିହ୍ନ ଯୋଗେ। ଦେଖିଲେ ମନେ ହେଲା, ବିଧାତା ତାଙ୍କ ମୂର୍ତ୍ତି ବସି ଗଢ଼ୁଥିଲା; ମାତ୍ର ଗଢ଼ି ସାରିନଥିଲା, କିଶୋର ବାବୁ ଜନ୍ମ ହୋଇ ପଡ଼ିଲେ; ସବୁ ସରିଥିଲା, କେବଳ ଚିକ୍କଣତା ବାକି ରହିଥିଲା।

ଲୋକେ କିଶୋର ବାବୁଙ୍କ ମୁହଁରେ ନୂଆ ସୌନ୍ଦର୍ଯ୍ୟର ପ୍ରଶଂସା ଯେତେବେଳେ କରନ୍ତି, ତାଙ୍କର ଗୋଟାଏ ବଡ଼ ଦୀର୍ଘ ନିଶ୍ୱାସ ଆସେ, ଅନ୍ତରର ସବୁଠାରୁ ଗଭୀରତମ କୋଣରୁ, ହୃଦୟର ଶତ ଗ୍ରନ୍ଥି ଛିଣ୍ଡାଇ; ଦେହର ରକ୍ତଗତି ସ୍ଥିର ମନ୍ଥି। ସେ ମନକୁ ମନ ଭାବନ୍ତି, "ଅଛା, ଦେଖିବ କିଏ ?" ସେ ନିଜେ ଦର୍ପଣରେ ଥରେ ସୁଦ୍ଧା ଦେଖିଲେ-ନାହିଁ। ଶାନ୍ତି ଦେବୀଙ୍କ ହାତ ଧରିଲା ଦିନୁ କୌଣସି ସୁଖ ଦେବାର ଏବା ଉପଭୋଗ କରିବାକୁ ପଡ଼ିଲେ, ସେ କହନ୍ତି, "ଏଟା ଶତକଡ଼ା ପଚିଶ ମାତ୍ର; ଶତେ ହୁଅନ୍ତା, ସାଥିରେ ଶାନ୍ତି ଦେବୀ ଥିଲେ।" ତେଣୁ ମେଳା ମଜଲିସକୁ କିଶୋର

ତାଙ୍କୁ ନିମନ୍ତ୍ରଣରେ ପ୍ରାୟ ଯାଆନ୍ତିନାହିଁ । ସଙ୍ଗୀମାନେ ଥଟ୍ଟାରେ କହନ୍ତି, "କିଶୋରଟା ଖାସା ବଦଳି ହେଲା ! ଏବେ ତ ପତିବ୍ରତାନସିନ କାମିନୀ ଜଣେ ସାକ୍ଷାତ ।"

ଚନ୍ଦନପୁରର ଜମିଦାରଙ୍କ ଘରସାରା ଗୋଟାଏ ଦୁଃଖର ଛାୟା ପଡ଼ିଗଲା । ସମସ୍ତଙ୍କ ମନରେ ବିଷାଦର ଛାୟା । ଶାନ୍ତି ଦେବୀଙ୍କ ଅଣ୍ଟି ଅପେ ଅପେ ଭଲ ହୋଇଯିବା କଥା । କିନ୍ତୁ ତା ତ ହେଉନାହିଁ । ଡାକ୍ତର ବୈଦ୍ୟ ସବୁ ପ୍ରକାର ଚିକିତ୍ସା କରି ଥକିଗଲେଣି । ତାହାକୁ କିଛି ବୁଝି ପାରୁ-ନାହିଁ । କିଶୋର ବାବୁଙ୍କ ଅଖିରୁ ଲୁହ ଶୁଖୁନାହିଁ । ଡାକ୍ତର ନରହତ୍ୟା ମକଦ୍ଦମାର ଅପରାଧୀ ପରି କହୁଛନ୍ତି, "ସେ ଔଷଧ ଦାନକୁ ଟୋପାଏ କରି ପକାଇବା କଥା । ସେଥିରୁ ଏ ଫଳ ଉପୁଜିବ, ଏହା ଆମ ଡାକ୍ତରି ଶାସ୍ତ୍ରରେ ନାହିଁ । ଏ ଏକ ଅଦ୍ଭୁତ ରୋଗ ।" ଡାକ୍ତର ବୈଦ୍ୟଙ୍କଠାରୁ ସାମାନ୍ୟ ଚାକର ପର୍ଯ୍ୟନ୍ତ ସମସ୍ତେ ଭାରି ଦୁଃଖିତ । କିନ୍ତୁ ଅମାବାସ୍ୟା ସନ୍ଧ୍ୟାରେ ମଧ୍ୟ ଶୁକତାରା ଗୋଟିଏ କ୍ଷୀଣ ଆଲୋକ ରେଖା ପୃଥିବୀ ଉପରକୁ ଛାଡ଼ିଦିଏ । କିଶୋର ବାବୁଙ୍କ ସହିତ କଥୋପକଥନ ବେଳେ ଶାନ୍ତି ଦେବୀ କହନ୍ତି, "ମୋର ବାହାରର ଦୃଷ୍ଟି ଚାଲିଗଲା; କ୍ଷତି ହେଉନାହିଁ କିଛି ତ । ଏଣିକି ମୁଁ ତୁମକୁ ଅନ୍ତର୍ଦୃଷ୍ଟିରେ ଦେଖିବି , ପ୍ରିୟତମ; ଧ୍ୟାନମଗ୍ନ ହୋଇ ତୁମର ପୂଜା କରିବି ।"

---

୨

ଶାନ୍ତି ଦେବୀ ପ୍ରକୃତରେ ଏଣିକ ପ୍ରାଣେଶ୍ୱରଙ୍କୁ ଅନ୍ତର୍-ଦୃଷ୍ଟିରେ ଦେଖିବାକୁ ଆରମ୍ଭ କଲେ । କିଶୋର ବାବୁଙ୍କ ସହିତ ସେ ପୂର୍ବ ପରି କଥାବାର୍ତ୍ତା ହୁଅନ୍ତି । ବେଳେ ବେଳେ ଦୁଇ ଚାରି ଘଣ୍ଟା ଚାଲିଯାଏ । କିନ୍ତୁ ଏପରି ଦୀର୍ଘ ଆଳାପର ସଂଖ୍ୟା କ୍ରମ କମିଆସିଛି । ଏବେ ଦିନେ ଦିନେ ଶାନ୍ତି ଦେବୀ ଆସି ପାଖରେ ବସିଗଲେ ଶୁଣୁଛନ୍ତି, "ଶାନ୍ତି, ବର୍ତ୍ତମାନ ମୋର ଟିକିଏ କାମ ଅଛି, ପରେ ଆସିବ; ମୁଁ ଡକାଇବି ।" ତାଙ୍କ କାନକୁ ଏକଥା ଗ୍ରହଣୀୟ ଅବଶ୍ୟ ନୁହେଁ । ମାତ୍ର ସେ ଯେପରି ସ୍ୱାମୀଙ୍କ ସୌନ୍ଦର୍ଯ୍ୟ ଆଉ ଆଖିରେ ଉପଭୋଗ କରୁ-ନାହାନ୍ତି, ତାଙ୍କ ସ୍ନେହ ମଧ୍ୟ ସେହିପରି କାନରେ ଗ୍ରହଣ କରିବାକୁ ଆଶାୟୀ ନୁହନ୍ତି । ଧ୍ୟାନରେ ସେ ପତି ଆରାଧନା କରିବା ନିମନ୍ତେ ନିଜକୁ ଗଢ଼ୁଛନ୍ତି । ତେଣୁ କିଶୋର ବାବୁଙ୍କର କୌଣସି କଥା ନୁହେଁ ହେଲେ ମଧ୍ୟ, ତାଙ୍କ ପ୍ରାଣରେ ଆଘାତ ଦେବାକୁ ସମର୍ଥ ନୁହେ ।

ଦିନ ପରେ ଦିନ, ପକ୍ଷ ପରେ ପକ୍ଷ, ମାସ ପରେ ମାସ କଟିଯାଉଛି । ଶାନ୍ତି ଦେବୀ କିଶୋର ବାବୁଙ୍କ ପ୍ରଣୟର ନୂତନ ସୂତ୍ରରେ ବାନ୍ଧିବାର ଆୟୋଜନ କରିବା ଲାଗି ସମୟ ମୁହୂର୍ତ୍ତେ ଅପେକ୍ଷା କରୁନାହିଁ । ଜୀବନର ପ୍ରତ୍ୟେକ ଲତା ବଲ୍ଲରୀ ଅନନ୍ତ କାଳ ପାରାବାରରେ ଚେଉ ଆଉ ମିଶି ବିଲୀନ ହୋଇଯାଉଛି । କିଶୋରବାବୁ ଆଉ ବେଶି ଘର ଭିତରେ ରହନ୍ତିନାହିଁ । ସେ କହୁଛନ୍ତି, "ଘରର ଅବରୁଦ୍ଧ ବାୟୁ ଅପେକ୍ଷା ବାହାରର ଉନ୍ମୁକ୍ତ ପବନ ସ୍ୱାସ୍ଥ୍ୟ

ପକ୍ଷେ ଉପକାରୀ; ସୂର୍ଯ୍ୟ କିରଣରେ ଜୀବନୀ ଶକ୍ତି ଅଛି, ଦେହରେ ଯେତେ ଲାଗିବ ଭଲ; ପୁରୁଷ ନାରୀ ନୁହେଁ ଯେ ପରଦା ଭିତରେ ରହିବ।" ତର୍କଶାସ୍ତ୍ରଟାକୁ ମନୁଷ୍ୟ ଯେ ନିଜର କ୍ରୀତଦାସ ସ୍ୱରୂପ ବ୍ୟବହାର କରିପାରେ, କନକପୁର ଜମିଦାରଙ୍କ ଘରେ ପ୍ରତି ଦିନ ତାର ପ୍ରମାଣ ଅଜସ୍ର ମିଳିବାକୁ ଲାଗିଲା।

ତହେଁ ଶାନ୍ତି ଦେବୀ କିଶୋର ବାବୁଙ୍କ କୋଠରିକି ଆସି ପଚାରିଲେ, "କଅଣ, ବସିଛ ?"

"ନା, ଉଠୁଛି ଯିବାପାଇଁ "

"କୁଆଡ଼େ ଯିବ ?"

"କଣିକର ଘରକୁ।"

"ପଛକୁ ଗଲେ ହବନାହିଁ? ମୁଁ ଆସିଥିଲି ବସି କଥାବାର୍ତ୍ତା ହବାକୁ। ମୁଁ ତ ରୋଜ ତୁମଠାରୁ ପନ୍ଦର ମିନିଟ କଥା ଶୁଣି ଗଲେ, ବାକି ତେଇଶ ଘଣ୍ଟା ପଇଁଟାଳିଶ ମିନିଟ ବସି ତାକୁ ଧ୍ୟାନ କରୁଛି। ଆଜ ମୋର କଣ ଅଛି ? ଟିକିଏ ବସ। ଏବେ ତୁମେ ଚାଲିଗଲେ, ଅଜି ଆଉ କଣ ଦେଖା ପାଇବ କି ?"

"ନା, ମତେ ଯିବାକୁ ହବ; ସମସ୍ତେ ଚାହିଁ ବସିଚନ୍ତି।" କହି କିଶୋର ବାବୁ ଫଡ଼ିକିନା ବାହାରି ଚାଲିଗଲେ। ଶାନ୍ତି ଦେବୀ ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ ସେ ଦିନ ଫେରିଆସିଲେ। ମାଉସୀ ଦୂରରୁ ଲକ୍ଷ କରୁଥିଲେ। ଆସି କହିଲେ, "କିଶୋରର କଣ ଗୋଟାଏ ଜରୁରୀ କାମ ଥିଲା; ଗଲାକି ?" ଶାନ୍ତି ଦେବୀ ମୁଣ୍ଡ ହଲାଇ ଉତ୍ତର ଦେଲେ।

ଅଜ କାଲି କିଶୋର ବାବୁ ବେଶି ସମସ୍ତ ଲୋକେର ଘରେ ବସାଉଠା କରନ୍ତି; କେବେ ନିଜ ଘର ଭିତରେ ପାଦ ପକାନ୍ତି । ଲୋକେର ଘରେ ତାସ ପଶା ଖେଳ, ଗୀତବାଦ୍ୟ, ମଜଲିସ ହୁଏ । ଖିଅପିଅଟା ମଧ୍ୟ ଅନେକ ଦିନ ବାହାରେ ହୋଇଯାଏ । ସେ ଦିନେ ଦିନେ ସ୍ୱତନ୍ତ୍ରମାନ ଯାଇ କେତେ ଅଡ୍ଡେ କଟାଇଅସନ୍ତି । ଶାନ୍ତି ଦେବୀ ଏସବୁ ବିଷୟରେ ପାଟିଟି ଚୁଇ ଖଣ୍ଡି କରନ୍ତିନାହିଁ । ପାଟି-ଫିଟାଇଲେ ହୁଏ ତ ତାଙ୍କ ସ୍ୱାମୀ ଆରାଧନାରେ ବ୍ୟାଘାତ ଘଟନ୍ତା । ମନୁଷ୍ୟର ବୁଦ୍ଧିବୃତ୍ତି ଯେଉଁଠାରେ କୁଳାଏନାହିଁ, ସହଜଜ୍ଞାନଟା କାମ ଦେଖାଏ । ଏହି ସହଜଜ୍ଞାନ ବଳରେ ପୃଥିବୀର କୋଟି କୋଟି ଜୀବ, ଏପରି କି ଜନ୍ମ ପିମ୍ପୁଡ଼ି ପର୍ଯ୍ୟନ୍ତ, କାହାରି ବିନା ସାହାଯ୍ୟରେ, ଅତଯାତ ହେଉଛନ୍ତି ? ଶାନ୍ତି ଦେବୀଙ୍କ ପରି ହୃଦୟବତୀ ରମଣୀ କଣ ସେଥିରୁ ବାଦ ପଡ଼ନ୍ତେ ? ତେଣୁ କନକପୁର ଜମିଦାରଙ୍କ ଘରେ ଘରର ଅଳଅଟେ।କେଇକ ଅର୍ଦ୍ଧନୋହି ଘୁଞ୍ଚା, ସେ ଦିନେ ଖୁଡ଼ଗାଡ଼ ନକରି ଦେଶ ଚଳିଯାଉଛନ୍ତି ।

୮

ଅର୍ଜ୍ଜୁନ ଚମ୍ପତରାୟ ଦିନେ ଝିଅକୁ ଫେରୋଇବାକୁ କନକପୁର ଆସି, ଶାନ୍ତି ଦେବୀଙ୍କୁ ଜୁଣ୍ଟାଇଧରି ଘଣ୍ଟାଏ କାଳ, ନାହାତ ପିଲାଙ୍କ ପରି, ଭେଁ ଭେଁ ହୋଇ କାନ୍ଦିଲେ । ଏତେ ଶାନ୍ତି ଦେବୀଙ୍କ ଅଖିକୁ ଦିଶୁନାହିଁ; ଅଣ୍ଟାଳି ଅଣ୍ଟାଳି, କାନ୍ଥବାଡ଼ ଧରି, ଗୃହକର୍ମ୍ମ । ହେମନ୍ତ କାଳୀନ ନଦୀ ପରି ଦେହ ଛପଣ ଶୁଖିଗଲାଣି । ମୁଖମଣ୍ଡଳରେ ପୂର୍ବର ଲାବଣ୍ୟ ଆଉ ନାହିଁ ।

ମୁଣ୍ଡର ବାଳଗୋଛାଟି ଇଛା ହେବା ଉପରେ । ଚମ୍ପତରାୟଙ୍କ ଏକମାତ୍ର କନ୍ୟାର ଏମିତ ଦଶା ହେବ ବୋଲି କିଏ କଣ କେବେ ସ୍ୱପ୍ନରେ ଭାବିଥିଲା ?

ଶାନ୍ତି ଦେବୀ ବାପାଙ୍କୁ ବୁଝାଇ କହିଲେ, "ବାପା, ମୋର ଗାଁକୁ ଫିବାଟା ଭଲ ହବନାହିଁ । ବର୍ତ୍ତମାନ ମୋ ଗାଁ ଘର ସବୁ ତ ଏଇଠି । ବାପଘରା ଲିଁ ନ କିଏ ଥାଳ କରିବ ? ଆପଣ ବ୍ୟସ୍ତ ହେବେନାହିଁ, ଏ ବୁଢ଼ା ବୟସରେ ମନଦୁଃଖ କରିବେନାହିଁ । ମୋର ଅଙ୍ଗ ଦାର୍ଢଟା ସିନା ଯାଇଚି; ଅଉ କଣ୍ଟ ଦୁଃଖ କଷ୍ଟ ଅଛି କି ? ଯାଁଙ୍କ ଘରେ ଧନ ଦଉଲତର ଅଭାବ ନାହିଁ । ମୁଁ ପିଲା ଦିନେ ଆପଣଙ୍କ କୋଳରେ ଯେପରି ଅଲଅର ହେଇ ବଢ଼ିଥିଲି, ଏଠି ମଧ୍ୟ ସେମିତ ଅଛି । ବୋଉକୁ କହିବେ, ମନଦୁଃଖ କରିବନାହିଁ । ଯାଉ କେତେ ଦିନ; ମୁଁ କେବେ ଯାଇ ଦେଖା ଗୁହିଁ । କରି ଅସିବି । ଏବେ ଗଲେ, କିଏ କଣ କହିବେ, କେତେ ବାଟ୍ଟ କରିବେ । ତାହିଁକି, ମୋର କଣ ହେଇଯାଇଚି ଯେ ? ତୁଣ୍ଡଟାକୁ ଏତେ କଥା ଭିଅଇବି ?"

ଚମ୍ପତରାୟ ଦୁଇ ଦିନ ରହି ଫେରିଗଲେ; କିଶୋର ବାବୁଙ୍କ ସଙ୍ଗେ ଦେଖା ହୋଇପାରିଲାନାହିଁ । ମାଉସୀ ଦୁଇ ଚୁରି ଥର ଡକାଇପଠାଇଲେ । କେତେ ବେଳେ କଣ କହିର ଅଟେ । ଗୀତର ଘୋଷା ଧରି ସେ ସବୁର ମର୍ମ ହେଉଛି, "ମୁଁ ବର୍ତ୍ତମାନ ଯାଇପାରୁନାହିଁ, ପଛକୁ ଯିବି ।" ମଦନ ବାବୁଙ୍କର ପୂର୍ବର କେତେ ଜଣ ସହପାଠୀ ସ୍ୱପରିବାର ଅସିଥାନ୍ତି; ତାଙ୍କୁ ମୁହୂର୍ତ୍ତେ ଫୁରସତ ନଥାଏ । କୌଣାବାଡ଼ି

ଚର୍ଚ୍ଚା ଅଭ୍ୟର୍ଥନା କରିଥାଏ । ସେ ପଛକୁ ଅସିବେ ବୋଲି ଖବର ପଠାନ୍ତି । କିନ୍ତୁ ସେ ପଛଟା କେବେ ଅସି ପହଞ୍ଚେ ନାହିଁ । ଶୁହିଁ ଶୁହିଁ ଚମ୍ପତରାୟଙ୍କ ଅଖିରୁ ପାଣି ପଡ଼େ ।

ଶାନ୍ତ ଦେବୀ ଦରଣ୍ଡି ଦରଣ୍ଡି କିଶୋର ବାବୁଙ୍କ ଯୋଗା ନିଜ ହାତରେ ସଫା କରନ୍ତି; ଲୁଗା କୁଞ୍ଚୁ ଅଟନ୍ତି; ବିଛଣାଟା ପୂର୍ବ ପରି ପଡ଼ିରହିଥାଏ, ସେ ତା ପୁଣି ବିଛାନ୍ତି । ମୋଟ ଉପରେ, ଦୃଷ୍ଟି ଶକ୍ତିର ବିନା ସାହାଯ୍ୟରେ, ଯେତେ ପ୍ରକାର କାମ କରିପାରନ୍ତି, କରନ୍ତି; ଯେପରି କି ପର ଘରେ ସେ ଗୃହକାର୍ଯ୍ୟ କରୁଛନ୍ତି; କାମରେ ଗଫଲତି କଲେ ବରଖାସ୍ତ ହୋଇ ଯିବାକୁ ପଡ଼ିବ । କାମ ନ ଥିବା ବେଳେ ସେ ଏକାକୀ ନିଜ କୋଠରି ଭିତରେ ଧ୍ୟାନରେ ବସିଥାନ୍ତି । ତା ମଧ୍ୟରେ କେତେ ପ୍ରଶାନ୍ତି ପ୍ରସନ୍ନତା ଦୃଶ୍ୟଟି ଜୀବନର ଅଜ ସବୁ ସ୍ମୃତିରାଶି ଭିତରୁ ମୁଣ୍ଡ ଟେକି ଶୁହେଁ । ସୃଷ୍ଟିର ନିୟମ ହେଉଛି, ଗୋଟାଏ ଶକ୍ତି କମି ଗଲେ, ଅଉ ଗୋଟାଏ ଶକ୍ତି ବଳବତ୍ତର ହୋଇ ଉଠେ; ପ୍ରକୃତି ସତେ ଅବା ସର୍ବଦା ନ୍ୟାୟ ବିଗ୍ରହ ଦେବାରେ, କ୍ଷତିଗ୍ରସ୍ତର କ୍ଷତିପୂରଣ କରିବାରେ ଲାଗିପଡ଼ିଛି । ଶାନ୍ତ ଦେବୀଙ୍କର ଦୃଷ୍ଟି ଶକ୍ତି ନଷ୍ଟ ହେବା ଦିନୁ ଅଖି ଦିଓଟିରୁ ଅଶ୍ରୁଧାର ଦୁଇ ଗୁଣ ବଢ଼ିଛି । ପୃଥିବୀରେ କେତେଗୁଡ଼ାଏ ନିଉଛୁଣା ପଦାର୍ଥ ଅଛି, ଯାହା କି ଅନ୍ୟର ସାହାଯ୍ୟ ଲୋଡ଼େ, ଓ ସେ ସାହାଯ୍ୟ ଯେତେ କମ ପାଏ ନିଜେ ସେତିକି ଅଧିକ ଅତ୍ମ ପ୍ରକାଶ କରେ । ମନୁଷ୍ୟ ଅଖିର ଲୁହ, ତା ଭିତରୁ ଗୋଟିଏ । ଅଗେ ଶାନ୍ତ ଦେବୀଙ୍କ ଅଖିରେ ଟୋପାଏ ଲୁହ ମୁକ୍ତାବିନ୍ଦୁ ପରି ଦେଖା ଦେଲା ମାତ୍ରେ କିଶୋର ବାବୁ ତାକୁ ସଙ୍ଗେ ସଙ୍ଗେ ଅପଣା ରୁମାଲ କଣରେ ବାନ୍ଧି ରଖୁଥିଲେ । ଏବେ ତାଙ୍କୁ

ଶିଶୁର ଖାଦ୍ୟ ନିଜ ଖାଲିରେ ଲୁହ ଟୋପେଇବାକୁ ପଡ଼ୁଛି । ସମଗ୍ର ପଶ୍ଚିମପାଖ ପାଇଁ ସେ ଲୁହ ପୁଣି ବର୍ଷା ଦିନର ଝରଣା ପରି ଅବିରଳ ବୋହିବାରେ ଲାଗିଛି ।

୯

ଏବେ ଶାନ୍ତି ଦେବୀ ଘରର ଗୋଟାଏ ଅସବାବ ପରି ଗୋଟିଏ କୋଣରେ ବସିଛନ୍ତି; ମାଳତୀ ହଠାତ୍ ପଶିଆସି କହିଲେ, "ବୋହୂ, ଟୋକାଟା ତ ଭାରି ଅବାଟକୁ ଗଡ଼ି-ଯାଉଛି । କଣ କରିବା ? ତୁ ନ ବୁଝିଲେ କିଛି ହବନାହିଁ ।"

"କହନ୍ତୁ, ମାଳତୀ ମା, ମତେ କଣ କରିବାକୁ ହବ ? ମୋ ଦ୍ୱାରା ହେଉ କାମ ଥିଲେ, ନହେଲେ ରହିବ ନା ?"

ମାଳତୀ କଥାଟାଏ କହିଲେ; ଶୁଣି ଶାନ୍ତି ଦେବୀ ଗୋଟାଏ ନିତାନ୍ତ ସରଳ ପ୍ରଶ୍ନ ପଚାରିଲେ । ପ୍ରଶ୍ନର ଉତ୍ତରରେ ମାଳତୀ କଣ କହିବେ, ଶାନ୍ତି ଦେବୀ ପାଳନ କରିବାକୁ ଅପେକ୍ଷା କରି ବସି ରହିଛନ୍ତି । ଉତ୍ତରଟା ମାଳତୀଙ୍କ ପେଟ-ଭିତରୁ ଠିକ୍ ବାହାରିଲା ମଧ୍ୟ; ମାତ୍ର ତଣ୍ଟିରେ ଆଘାତ ପାଇ ଅଟକି ରହିଗଲା । ବାହାରକୁ ଆସିଲା କେବଳ ଗୋଟାଏ ବଡ଼ ଦୀର୍ଘ ନିଶ୍ୱାସ । ଦୀର୍ଘନିଶ୍ୱାସଟାକୁ ଲୁଚାଇବା ପାଇଁ ମାଳତୀ ଆଉ ଗୋଟିଏ ପ୍ରଶ୍ନ ପଚାରିଲେ, "ବୋହୂ, ତୋ ବାପା ଯେ ସେଦିନ ଆସିଥିଲେ, ତତେ ଘରକୁ ନବାପାଇଁ ଏତେ ବଳାଉଥିଲେ କାହିଁକି ?"

"ମତେ ନବାକୁ ବୋଲି କହୁଥିଲେ ।"

"ତୁ କଣ କହିଲୁ ?"

"ମୁଁ ନାହିଁ କଲି ।"

"କାହିଁକି ?"

"ମାଉସୀ ମା, ସେଇଟା ତ ବର୍ତ୍ତମାନ ମୋର ପର ଘର । ମୋ ଘର ହେଉଛି ଏ । ଯେତେ ଅଲୁଣୀ, ଶ୍ଳେଷି କୁଟୀ ହୁଏ, ଏଠି କଣରେ ପଡ଼ିଥିଲେ, କଣ ନା, ଘରର ବୋହୂ । ଗୋଲାପ ବଗିଚାରେ ଦୁଦୁରା ଫୁଲ କଣ ନ ଫୁଟେ ? ତେବେ ସେ ଫୁଲ । ତାକୁ ତୋଳିନେଇ ଋନୁବେଦୀରେ ଥୋଇଲେ ମଧ୍ୟ, କଣ ହବ ? ମଉଳି ଶୁଖିଯିବ ସିନା । ଯେ ହେଲେ କହିବ, ଘରର ଅଳିଆ ।"

"ଅଚ୍ଛା, ବୋହୂ, ପୁଅଟାର ତ ମନ ଏମିତି ରଗଲା ଧରିଲାଣି । ତାକୁ ଅଉ କୁଟି ଦେଖି ଛାଡ଼ଦେଲେ ହୁଅନ୍ତା-ନାହିଁ ? ବାଟକୁ ଅସିଯାନ୍ତା ଅବା ।"

"ମାଉସୀ, ମୁଁ ତ କେତେ ବାଳ ହେଲା ସେଇ କଥା ବିଚାରୁଛି । ମାତ୍ର ମୁହଁ ଫିଟାଇ କହିପାରୁନାହିଁ । ଆଉ ଭଲ ହବ ।"

ମାଉସୀ ଓ ଶାନ୍ତ ଦେବୀଙ୍କ ଭିତରେ ଅନେକ କଥାବାର୍ତ୍ତା ପଡ଼ିଲା । ଝରଣାର ମୁହଁରେ ପଥର ଗୋଡ଼ା ଜମାହୋଇଥିଲେ, ତାହା ମାଟି ତଳେ ଅଦୃଶ୍ୟ ହୋଇ ପଡ଼ିରହୁଥାଏ । କିନ୍ତୁ ଥରେ ଉପରୁ ଖଣ୍ଡେ ପଥର କାଟି ବାହାର କରିଦେବା ସଙ୍ଗେ ସଙ୍ଗେ ଉତ୍ସ ଯେ ଫିଟିଯାଏ ତାକୁ ଅଉ ବନ୍ଦ କରିବାର ଶକ୍ତି କାହାର ? ବହୁ କଥାବାର୍ତ୍ତାର ଉପସଂହାରରେ ଶାନ୍ତ ଦେବୀ କହିଲେ, "ମାଉସୀ, ମୋର ତଳେ ଦୁଖ ହବନାହିଁ । ଏ ଘର ତାଙ୍କର ଯେତିକି ମୋର କଣ ସେତିକି ନୁହେ ? ଘରର ମଙ୍ଗଳ ହବ; ମୋର ପୁଣି ସେଥିରେ ଦୁଖ ? ନା, ନୂଆ ବୋହୂଟିକୁ ମୁଁ ସାନ ଭଉଣୀ ପରି ଜାଣିରହିବ । ଅପଣ କନ୍ୟା ଠିକ କରନ୍ତୁ । ଭଲ ଘର, ଦେଖି ଗୃହିଣୀ

ଗୋଟିଏ ନିଖୁଣ କନ୍ୟା ବାଛିବେ । ସେ ଯେତେବେ ନିଜେ ବେଶି ପସନ୍ଦ କରିବେ, ଆମ୍ଭର ଭଲ ।" ହୃଦୟର ଭାବନା ବ୍ୟକ୍ତ କରିବା ଠିକ୍ ସମୟରେ ସରିଗଲା । ଆଉ କହିବାକୁ ପଡ଼ିଥିଲେ, ତେଣିକି ଶାନ୍ତ ଦେବୀ କେବଳ କୋହରେ ହିଁ ତା ପ୍ରକାଶ କରିଥାନ୍ତେ । ତାଙ୍କର ସମଗ୍ର ପ୍ରାଣ ଭିତରେ ଗୋଟାଏ ସାତ ବର୍ଷର ପୁରୁଣା ପାଗଳ ଗଣ୍ଠି ଛିଣ୍ଡିବାକୁ ଆରମ୍ଭ କରୁଥିଲା ।

ମାଳତୀ ସଂସାରଟାରୁ ଯେତେ କମ ଦେଖିଥିଲେ ସୁଦ୍ଧା, ଶାନ୍ତ ଦେବୀଙ୍କ ମାନସିକ ଅବସ୍ଥା ହୃଦୟଙ୍ଗମ କରିନେଲେ । କିନ୍ତୁ କାର୍ଯ୍ୟଟା ଆଧାରେ ଛାଡ଼ିଯିବାକୁ ସେ ଆସିନଥିଲେ । କାରଣ, ସେ ଏଥି ପୂର୍ବେ ଶାନ୍ତ ଦେବୀଙ୍କ ନିକଟକୁ ସେହି ଗୋଟାଏ ବିଷୟ ନେଇ କେତେ ଥର ଆସିଛନ୍ତି ଓ କେତେ ଥର କହିନପାରି ଫେରି ଯାଇଛନ୍ତି । ତେଣୁ ସେ କଥା ପକାଇଲେ, "ବୋହୂ, କନ୍ୟାଟିଏ ଠିକ୍ ହୋଇଛି ।"

"ତେବେ ଆଉ ଡେରି କାହିଁକି ? ମଙ୍ଗଳକୃତ୍ୟ ବନ୍ଧାନ ବଢ଼ାଇଦଅନ୍ତୁ ।" ଶାନ୍ତ ଦେବୀଙ୍କ ମୁଖମଣ୍ଡଳ ଗମ୍ଭୀର ହୋଇ-ଆସିଲା । କିଶୋର ବାବୁ ଆଉ ଥରେ ବିବାହ କରନ୍ତୁ, ଏହା ତାଙ୍କର ଏକାନ୍ତ ଇଚ୍ଛା । ସେ ଅପେକ୍ଷା କରୁଥିଲେ ଯେ ପ୍ରସ୍ତାବଟା ସେ ନିଜେ କରିବେ । କିନ୍ତୁ ତା ହେଲା ନାହିଁ, ମାଳତୀଙ୍କ ଅତ୍ୟାଗ୍ରହ ଆସିଗଲା । ତଥାପି ଶାନ୍ତ ଦେବୀ ଆଉ ଥରେ କହିଲେ, "ଆଉ ଡେରି କରି ଲଭ କଣ ? ଦିନ ସ୍ଥିର କଲେଣି ?"

"ନା; କନ୍ୟାର ମା ଗୁଣ୍ଡୀ ଯେ ଗୋଟାଏ କେଁ ଧରି ବସିଛି ।"

"ନାହିଁ, ମାଉସୀ ମା, ମୁଁ ସତ କହୁଚ; ମୋର ଏଥିରେ ଛିଳେ ଅପତ୍ତି ନାହିଁ । ମୋର ଭ୍ରାନ୍ତ ଅନନ୍ଦ ହବ । ଘରର ପୁଅ ଘରକୁ ଫେରି ଆସିବେ ।"

"ନା, ବୋହୂ, କଥାଟା ସେଠେଇ ନାହିଁ ।"

"ଅଉ କଣ ?"

"କହୁଚ ଯେ ସତଜୁଣିଅ ଘରେ ସେ ହିଁ ଅ ଦବ-ନାହିଁ ।" ମାଉସୀ ଭଟି ଟିଅ ହୋଇ ପାରଥିଲେ; ପାଟିରୁ କଥା ସବୁ ନ ସରୁଣୁ ବାହାର ଗୃହିଗଲେ । ଶାନ୍ତି ଦେବୀଙ୍କ କୋଠରୀରେ କେବଳ ବହିଗଲା ତାଙ୍କର ଶେଷ ଦୀର୍ଘ ନିଶ୍ୱାସଟା ।

୧୦

ସେ ଦନ ତା ବାଦ୍ କିମ୍ବା ତା ପର ଦନଟାଯାକ ଶାନ୍ତି ଦେବୀଙ୍କ ସଙ୍ଗେ ମାଉସୀଙ୍କର ଦେଖା ସାକ୍ଷାତ, କଥାଭାଷା କିଛି ହୋଇନାହିଁ । ଶାନ୍ତି ଦେବୀଙ୍କଠାରୁ ସେ ସବୁ ଶୁଣିଛନ୍ତି; ବାକୀ ଅଛି କେବଳ ପଦେ । ସେହି ପଦକ ଶୁଣିବାକୁ ଯିବାପାଇଁ ତାଙ୍କ ଛାତି ପତାଉନାହିଁ । କିନ୍ତୁ ନ ଶୁଣିଲେ ଯେ ନ ଚଳେ । ତେଣୁ ସେ ପର ଦନ ସକାଳେ ଶାନ୍ତି ଦେବୀଙ୍କ କୋଠରୀରେ ଯାଇ ପହଞ୍ଚିଲେ । ଦେଖିଲେ, କୋଠରୀଟା ଶୂନ୍ୟ । ମୁହୂର୍ତ୍ତକ ପାଇଁ ତାଙ୍କ ଆଖି ଖୋସିହୋଇଗଲା । କେତେକ ସମସ୍ତ ଭିତରେ ଗୃହଅଡ ହୁଲସ୍ଥୂଳ ପଡ଼ିଲା, ଶାନ୍ତି ଦେବୀ ନାହାନ୍ତି । ବହୁତ ଖୋଜାଖୋଜି ହେଲା; କୂଅ ପୋଖରୀ ଉଣ୍ଡାଗଲା; ଶାନ୍ତି ଦେବୀଙ୍କ ପତ୍ତା ମିଳିଲାନାହିଁ । ଏତେ ବଡ଼ ଗୋଟାଏ ଘଟଣା ପାଇଁ କେହି ପ୍ରସ୍ତୁତ ନ ଥିଲେ ।

ତେଣୁ ସମସ୍ତେ ଅଳ୍ପ ବେଶି ବିଚଳିତ ହୋଇପଡ଼ିଲେ । କେବଳ କିଶୋର ବାବୁ ମନକୁ ମନ କହୁଥିଲେ, "ଯାହା ଘଟିବାକୁ ଥିବ, ଘଟିବ; କିଏ ଅନ୍ୟଥା କରିବ ? ଗଲା ତ ଗଲା, ଗୋଟାଏ ଜଣ ହୁଙ୍କା ଗଲା । ଏଣିକି ନୂଆ ବନ୍ଧୁ ଆସିବ; ନୂଆ ଗୋଟିଏ ନୂତନ ଜୀବନର ସୃଷ୍ଟି ହେବ ।" ଗୋଟାଏ ଦୀର୍ଘ ନିଶ୍ୱାସ ଛାଡ଼ି, କଳ୍ପିତ ନୂତନ ଜୀବନ ପାଇଁ ହୃଦୟରେ ସତେ ଅବା ସ୍ଥାନ ଖାଲି କରି ରଖିଲେ ।

ନୂଆ ବନ୍ଧୁ ଆସିଲା । କନକପୁର ପୁଣି ଥରେ ଉତ୍ସବର କୋଳାହଳରେ ଉଚ୍ଛୁଳି ଉଠିଲା । ପୁଣି ବାଜା ବାଜିଲା, ଭୋଜିଭାତ ହେଲା, ବନ୍ଧୁବାନ୍ଧବ ଜୋଡ଼ାହୋଇ ଆସିଲେ । ଗୁରୁବାରର ସକଳ ଆୟୋଜନ ପୂର୍ଣ୍ଣ ହେଲେ ଶେଷରେ ଲକ୍ଷ୍ମୀ ଦେଉର ଅସି ଘରେ ପାଦ ପକାନ୍ତି, ସେହିପରି ଶଙ୍ଖ ହୁଳହୁଳି ରୋଳ ମଧ୍ୟରେ କନକପୁର ଜମିଦାରଙ୍କ ଘରେ ଆସି ପାଦ ପକାଇଲା କଲ୍ୟାଣୀ ।

ନୂଆ ବୋହୂକୁ ଦେଖି ସମସ୍ତେ ଉଚ୍ଛୁରିହୋଇଗଲେ । କହିଲେ, "ସତେ ଯୁକ୍ତ କିଶୋର ବାବୁଙ୍କ ପାଇଁ ଷଠୀ ଗଢ଼ି ଥୋଇଥିଲା ପରା ।" କିଶୋର ବାବୁ କଲ୍ୟାଣୀର ମଧ୍ୟ ବେଶ ପସନ୍ଦକୁ ଆସିଲେ । ଶୁଣିବାକୁ ସିନା ଦ୍ୱିତୀୟ ପକ୍ଷ ବର; କିନ୍ତୁ ବୟସଟା ତ ପ୍ରଥମ ପକ୍ଷର । ସେ ଜଣେ ଦୀର୍ଘାକୃତ ଯୁବକ, ଗୌରବର୍ଣ୍ଣ; ମୋଟା ଲୋକେ ତାଙ୍କୁ ପାତଳା କହନ୍ତି, ପାତଳା ଲୋକେ କହନ୍ତି ମୋଟା । ମୁହଁରେ ନିଶ ଦୁଇପଟା ଅଳ୍ପ ଗଜୁରିଛି ଏବଂ ଉପର ଓଠର ଦୁଇ ପାଖେ ଦୁଇ ଗୋଟି ନୂଆ ଲତାପତ୍ର ପରି ଝୁଲି ଭ୍ରୂଲତା ସହିତ ପ୍ରତିଯୋଗିତା କରିବାରେ ଲାଗିଛି ।

କିଶୋର ବାବୁ ଓ କଲ୍ୟାଣୀ କନକପୁରରେ ତିନି ବର୍ଷ ପୂର୍ବର ଅନୁଭୂତିମାନ ପୁଣି ଥରେ ଭବ ରଙ୍ଗମଞ୍ଚରେ ଅଭିନୟ କରିବାକୁ ଆରମ୍ଭ କଲେ । ରଙ୍ଗମଞ୍ଚ ସେହି ସବୁ ରହିଛି; ସେହି ପୋଷାକ ପତ୍ର, ସେହି ପୁରାତନ ନାଟକ; ପରିବର୍ତ୍ତନ ଘଟିଛି କେବଳ ଜଣେ ନାୟିକାରେ । ସେ କଥା ଅନ୍ୟ ଯେତେ ଯେ ଅନୁଭବ କରନ୍ତୁ, ନିଜେ ନାୟକ ଅନୁଭବ ନ କଲେ ହେଲା । କିଶୋର ବାବୁ ଅଭିନୟରେ ଏତେ ମଜ୍ଜିଗଲେ ଯେ ପରିବର୍ତ୍ତନ ଅପେକ୍ଷା ସାମଞ୍ଜସ୍ୟ ହିଁ ତାଙ୍କ ଆଖିରେ ପଡ଼ିଲା । ମାଉସୀ ଦେଖି କହିଲେ, "ଯାହା ହେଉ, ଟୋକାଟା ବାଟକୁ ଆସିଗଲା ।" କିଶୋର ବାବୁ ପୁଣି ଘରର ବ୍ୟିତୀୟ ବୋହୂଟି ସହ ଦିନ ରାତିବେଳ ଘଣ୍ଟା ଗମ୍ଭୀର ଭାବରେ କଟାଇଲେ; ଗାଁ ଦାଣ୍ଡ, କଚେରି ଘର ଓ ସଙ୍ଗୀମାନେ ଆଉ ତାଙ୍କର ଦର୍ଶନ ପାଇଲେ ନାହିଁ ।

## ୧୧

କଇଁ କହିଛି କୁନ୍ଦ ବର୍ଷରେ ଦିନେ ସନ୍ଧ୍ୟାରେ ଫୁଟି ତା ପର ଦିନ ସକାଳେ ମୁଦି ହୋଇଯାଏ । କିନ୍ତୁ ପୁଣି ସନ୍ଧ୍ୟା ଆସିଲେ, ଆଉ ଥରେ ଆଖି ଫିଟାଇ ଚାହେଁ । ଏହି ପରି ଦୁଇ ଚାରି ରାତି ଫୁଟି, ଶେଷରେ ଦିନେ ଯେ ସକାଳେ ତାହା ମୁଦି ହୋଇଯାଏ, ଆଉ ସନ୍ଧ୍ୟା ହେଲେ ଫୁଟେନାହିଁ, ମଉଳି ପଡ଼ିଯାଏ । ଦୁଇ ଚାରି ସପ୍ତାହ ଚାଲିଗଲା; ଦିନେ କିଶୋର ବାବୁ ମନକୁ ମନ କହିଲେ, "ଦେଖୁଛି, ଏ ଗୋଟାଏ ସ୍ଥଳପଦ୍ମ ... ଦେଖାଟା ଦୂରକୁ ଚୋଖପ ପରି, ମାତ୍ର ବାସ୍ନା କଣିକାଏ ନାହିଁ ।" କଲ୍ୟାଣୀ ଚମକିପଡ଼ି ଚାହିଁଲା; ଦେଖିଲା,

ତା ଆଖି ଆଗରେ ତାର ପ୍ରାଣେଶ୍ୱର କିଶୋର ବାବୁ ନିଜେ ନାହାନ୍ତି, ଅଛି ତାଙ୍କର ଚୋଟାଏ ଛାୟା। ସେ ଭୟରେ ଥରିବାକୁ ଲାଗିଲା। ଥରି ଥରି ତାର ଗୋଟାଏ ରାତ ପାହିଗଲା। ମନକୁ ମନ ବୁଝାଇଲା, "ଏଟା ଗୋଟାଏ ସାମୟିକ ଅଭିରୁଷ; ଯା ପରେ ଗଣ୍ଠା ଅନ୍ଧାର ହାଣି ହେବ।" କିନ୍ତୁ ଆଉ ଦିନ ସନ୍ଧ୍ୟା କଳ୍ପନାକୁ ଅପ୍ରମାଣିତ କରିଦେଲା।

ସନ୍ଧ୍ୟା ପରେ ସନ୍ଧ୍ୟା କେତେ ଗଲା। କଲ୍ୟାଣୀ ହୃଦୟର ଚନ୍ଦ୍ରମା କିଶୋର ବାବୁଙ୍କ ବକ୍ଷର କରି କଢ଼ିଟିକି କେତେ ଡାକିଲା, ପୁଣି ଆଖି ଫିଟାଇ ଚାହିଁବାକୁ କେତେ ଆଦର ଅନୁନୟ କଲା। ମାତ୍ର ଫଳ କିଛି ହେଲାନାହିଁ। କଲ୍ୟାଣୀ କାରଣ ପଚାରି ଉତ୍ତର ସୁଦ୍ଧା ପାଇଲାନାହିଁ। ସେ ମନକୁ ମନ କହିଲା, "ମୁଁ କଣ ସାମାନ୍ୟ ଘର ଝିଅ? ଆମ ରଜଦ ପୁରୁଷ ସମସ୍ତେ ଲଢୁଥିଲେ, ମରିବେ ସିନା, ହଟିବେନାହିଁ। ମୁଁ କଥା ବାହାର ନ କରି ଛାଡ଼ିବ?"

କଲ୍ୟାଣୀ ନିଜ ପଚୁଣଟା ପ୍ରଶ୍ନ ପଚୁରେ; କିନ୍ତୁ ଉତ୍ତର ପଚୁଣଟାର ପାଏ ନାହିଁ। କିଶୋର ବାବୁ ମନକୁ ମନ ବସି ଭାବନ୍ତି, "ହାୟ, ବିଧାତା! କଣ ନ କଲ! ସେ ଯେତେ-ବେଳେ ଝୋପାକ କାଟାରେ ଦ ଝୋପା ପକାଇବାକୁ ବସେ, ମୁଁ କହେ କଣ ନା, ତଳ ଝୋପା ପକାଅ। କାହିଁକି? ନା, ମୋ ବିକୃତ ମୁହଁଟା ତାକୁ ଦିଶିବ ନାହିଁ। ଦିଶିଥିଲେ କଣ ହୋଇଥାନ୍ତା? କଲ୍ୟାଣୀ ଆସି ନ ଥାନ୍ତା। [illegible] ତ ଭଲ କଥା। ଏ କଲ୍ୟାଣୀ ଅମିଳ କାହିଁକି? ତା ଅଭିମାନ ପୂର୍ଣ୍ଣ କରିବାକୁ? ଏ କରିବ? ଏଇ କଲ୍ୟାଣୀ! ଅସମ୍ଭବ।"

ସେତେବେଳେ କଲ୍ୟାଣୀ କିଶୋର ବାବୁଙ୍କ ମୁହଁକୁ ଗୁହିଁ-ଦେଲେ, ତା କଲିଜା ପାଣି ହୋଇଅସେ ।

କିଶୋର ବାବୁ ପୁଣି ଭାବନ୍ତି, "ଡାକ୍ତର ତ ଦେଖେ ସୁରୁବଲ । ପାଞ୍ଚିଟି ଘଣ୍ଟା କରନାହିଁ । ବହୁଲ, ଟୋପାଏ, ଜାଡ ଟୋପାଏ ପକାଇବ, ଟୋପାକୁ ଘ ଟୋପା ନହେ । କାହିଁକି ?" ଶୁଣନ୍ତି, କିଏ ଯେପରି କାନ ପାଖେ ଭୁନ୍ ଭୁନ୍ ଉତ୍ତର ଦେଉଛି, "ମୁଁ ତୁମ ନାଁ କହନ୍ତ କପର ?" ଶୁଣି ସେ ଚମକି ପଡ଼ନ୍ତି; ସତେ କିଏ ଅବା ଅସି କହୁଛି ବୋଲି, ଗୁର ଅଡ଼କୁ ଗୁହାନ୍ତି, ମାଏ କାହାକୁ ଦେଖନ୍ତିନାହିଁ; କେବଳ ଘରର ଗୋଟାଏ ଖୁଣ୍ଟି ମର କଲ୍ୟାଣୀ ପାଖରେ ଠିଆ ହୋଇ ଆଁ କରି ଗୁହିଁ ରହୁଥାଏ ।

କଲ୍ୟାଣୀ ଅସିଥିଲା ଘରଦ୍ୱାର କରି ସୁଖରେ ରହିବାକୁ । କିନ୍ତୁ ମାସଖଣ୍ଡକ ଭିତରେ ସେ ବୁଝିଗଲା ଯେ ତା ଘରଟା ପିଲାଙ୍କ ଟୁଲଘର ମର ଗୁହିଁ ଗୁହିଁ ଭାଙ୍ଗିପଡୁଛି । ସେ ଦେତେବେଳେ ଦ୍ୱାର ଫିଟାଇ ପାଖରେ ଅସି ଠିଆ ହୁଏ, କିଶୋର ବାବୁ ଜାଣିପାରନ୍ତିନାହିଁ; ଠିଆ ହୋଇ ହୋଇ ଦେତେବେଳେ ଦୀର୍ଘ ନିଶ୍ୱାସ ପକାଇ ଫେରିଯାଏ, ଲକ୍ଷ କରନ୍ତିନାହିଁ । କିଶୋର ବାବୁ କେବଳ ଖଟରେ ଶୋଇ ଶୋଇ ଭାବନ୍ତି । ଚିନ୍ତାର ଭାର ବେଶି ହୋଇଗଲେ, ତାକୁ ବହିବା ପାଇଁ ଉଠି ବସନ୍ତି । ଜଗତ ମିଛ ହେଉଛି, ଯେ ବୋଝ ବହିବାକୁ ବସିଛି ହୁଏ, ତାର କାନରେ ଆସେ ସବୁ ବୋଝ ଲଦି ଦେବାକୁ ବସେ । କିଶୋର ବାବୁ ବସିବାଠାରୁ ଉଠି ଠିଆ ହୁଅନ୍ତି; ଠିଆ ହେଲେ ଏଥର ପାଦୁଟି ପକାଇ

ଚାଲନ୍ତି । ଘର ଭିତରୁ ବାଣ୍ଡି ଓ ବାଣ୍ଡିରୁ ଘର ଭିତର ଯିବା ଆସିବା କରନ୍ତି; ସତେ ଅବା ସେପରି କାହାକୁ ଖୋଜୁଛନ୍ତି ।

ଏହି ସବୁ ଅବସ୍ଥାରେ ଥରେ କଲ୍ୟାଣୀ ପଚାରିଲା, "ମତେ କଣ ଭୁଲିଗଲ ?" କିନ୍ତୁ କିଛି ଉତ୍ତର ପାଇଲାନାହିଁ । ତାହୁଁ ସେ ତାଙ୍କ ଦେହ ହାତରେ ଟିକିଏ ହଲାଇଦେଲା । ଛୋଟ ଛୋଟ ଗଛ ପବନରେ ନଇଁଯାଏ ; ବଡ଼ ବୃକ୍ଷ ସିଧା ଠିଆ ହୋଇ ବତାସକୁ ଅପେକ୍ଷା କରି ରହେ । କଲ୍ୟାଣୀ ତଥାପି ଉତ୍ତର ନ ପାଇବାରୁ ଦୁଇ ହାତରେ ତାଙ୍କୁ ହଲାଇଦେଲା । କିଶୋର ବାବୁ ନିଦରୁ ଉଠିଲା ପରି କହିଲେ, "କିଏ, ଶାନ୍ତି ?"

"ମୁଁ ପରା କଲ୍ୟାଣୀ; ମତେ କଣ ଭୁଲିଗଲ ?"

"ନା, କଲ୍ୟାଣୀ, ଭୁଲିନାହିଁ; ଦୁଇ ଗୁଣ ମନେ ହୋଉଛ ।"

"ଯାହାର ପୁଣି ଅର୍ଥ କଣ ?"

"ଅର୍ଥ ହେଉଛି ସେ ତୁମେ ମତେ ଗୋଟାଏ ତୁଳନା କରିବାର ସୁବିଧା ଦେଉଛ । ଓହୋ ! ମାତ୍ର ଏ ଯେ ଆକାଶ ପାତାଳ ପ୍ରଭେଦ । ଶାନ୍ତି ଆଉ କଲ୍ୟାଣୀ । କଲ୍ୟାଣୀ, ଝଟକର ସନ୍ଧ୍ୟାରେ, ସାତବର୍ଷ ତଳେ, କି ଦୃଶ୍ୟ ସେ ! ମାତୃସ୍ନେହର ଏକ ଅପୂର୍ବ ମୂର୍ତ୍ତି । ଏ ଘରଟାକୁ ଗୋଟାଏ ଶ୍ମଶାନ କରିଦେଇ ଚାଲିଗଲା । ଆଉ କଣ ଆସିବ ସେ କେବେ ? କାହିଁକି ? କିଏ ଅଣିମ ? ଓଃ, ଶାନ୍ତି ଶାନ୍ତି—ଶାନ୍ତି । ସେ କଣ ଅଛି ? ମୋତେ ବେଣି ?"

୧୨

"ଅଚ୍ଛା, ମା, ମତେ ତୁମେ ବସ୍ତ୍ରବର ରଖିବ ନା ?"

"ହଁ, ହେଁ ହିଁଅ, ରଖିବି । ନ ହେଲେ ମତେ ହାତ ଧରି କିଏ ନିଅଣି କରିବ ?"

"ଖାଇବାକୁ କୁଁଠୋଉ ଦବ କିଛି ? ତୁମ ନିଜ କଥା ତ ତୁମକୁ ଅଠାଠିକ । ଦିନ୍ ବଲ୍ଲେ ନ ଖାଇଲେ ମୁଁ କଣ ରହିପାରିବ ? ସେ ମୁଦ ବାଛା ଝଙ୍କା ସଞ୍ଚିଲାଣି ? ଏ ମୁଦଟା ଦୋକାନଦାନ ଦକ୍ଷିବ, ମା ?" ଅଂଗୁଠିରେ ଥିବା ମୁଦଟିକି ନିଜ ହାତରେ ଲୁଚାଇଁଲ ।

"ତତେ ପଣ୍ଡ ଦେଢେ ଥର କହିଲାଣି, ଏ ମୁଦ ବାଛା-ହବନାହିଁ । ତୋର ଢାହିଁକି ଏତେ ଚିନ୍ତା କେ ? ତୋର ପେଟକୁ ମୁଠେ ମିଳୁନାହିଁ ? ଅଚ୍ଛା, ମତେ ଠିକ ବାଟ କଢ଼ାଇ ନେ; ଢାହା ମୁଣ୍ଡରେ ଗୋଡ଼ ବାଜି ଫାଟି ଯିବଟି ।"

"ମା, ତୁମେ କଣ ଅନ୍ଧ ଗାଁକୁ ଯିବନାହିଁ ? ତୁମର ପଣ୍ଡ ଘରେ ଗିରସ୍ତ, ମା, ମାଉସୀ ସମସ୍ତେ ଅଛନ୍ତି ?"

"ମୁଁ ପଣ୍ଡ ତୀର୍ଥ କରିବାକୁ ଅସିଚ ।"

"ଏ ତୀର୍ଥ, ଅଖି ପୋଡ଼ିଯାଇଚ ନା କଣ ? ଗୋଇଠା ମାରି ଗୁଲିପାଉଚ ?"

"ମୁ ପଣ୍ଡ ଅନ୍ଧୁଣୀ, ଗୋ ମା । ହିଁଅ, କହୁଚ, ମତେ ଢୁସିଅରରେ ନେ ବୋଲି କହୁଲେ ଶୁଣୁନାହଁ ।

"ତାଙ୍କ [illegible]ନାହିଁ, ମା । ସେ ତ ବସିଚନ୍ତି । ଖାଲି ଗୋଡ଼ [illegible]ରେ ଟିକିଏ ତୁମ ଗୋଡ଼ ବାଜିଗଲା । ମାଙ୍କେ, ଏଇଥିକି କି ପାଟି ।"

"କଣ କହୁଚୁ ! ଶଙ୍ଖୁଡ଼ି ଚାପିଲେ ମୁଣ୍ଡରେ ପୀଡ଼ା ! ପାଚି ବଢ଼ି ଯାଉଚି ? କହୁଚୁ କଣ ନା, ମୁଣ୍ଡରେ ବାଜୁନାହିଁ । ଅହୁରି ମୁଣ୍ଡକୁ ମୋର ଗୋଇଠା ମାରୁଥାନ୍ତା !"

"ପିଲାଟା କଥା କଣ ଶୁଣୁଚ ମ ? ମୁଁ ପରା ଅନ୍ଧୁଣୀଟାଏ ।"

ନିକଟରେ ଦୁଇଜଣ ସ୍ତ୍ରୀଲୋକ ଠିଆ ହୋଇଥିଲେ । ଜଣେ କହିଲା, "ମୁଁ କହୁଚି, ଏଇ ଟେହଇଥିବେ ?"

"ନା, ଯମୁନା, ଏ ଅନ୍ଧୁଣୀକି ତ ଆମେ କେତେ ଥର ଏଇ କଡ଼ଦେଉଳ ବେଢ଼ାରେ ଦେଖିଚୁ । ମାଉସୀ ପ୍ରଥମେ ଦେଖିକି ମାନେ କହିଲେ, ଏ କୁହେ । ସେ ସିନା ଚିହ୍ନାନ୍ତି, ମୁଁ ତ କେବେ ଦେଖିନାହିଁ । ଆଚ୍ଛା, ଆସ ଯା ପଛେ ପଛେ ଯିବା । ଦେଖିବା, କଣ କରିବ ।"

ଗୋଟିଏ ଦଶ ବର୍ଷର ବାଳିକା ବାଁ ହାତର ଅଙ୍ଗୁଠି ଧରି ଜଗମୋହନ ଭିତରେ ବାଟ କଢ଼ାଇ ନେଉଛନ୍ତି, ଜଣେ ଅନ୍ଧୁଣୀ ଧୀରେ ଧୀରେ ପାଦ ପକାଇ କାଠଗଡ଼ା ଆଡ଼କୁ ଚାଲିଛନ୍ତି । ଚଉଁରି ଅଲଟ ପଡ଼ୁଛି; ବାଜା ବାଜୁଛି; କେତେ କାହାର ନିବେଦନ, ସ୍ତବ ସଙ୍ଗୀତ ସ୍ୱର ମିଶି, ଏ ଭବ ସଂସାରର ଗୋଟାଏ ମିଳିତ ଗୁହାରି ଭାବରେ ଦେଉଳ ଭିତରଟାଯାକ ପ୍ରତିଧ୍ୱନିତ ହେଉଛି । ତା ମଧ୍ୟରେ ଅନ୍ଧୁଣୀ ପ୍ରଣିପାତ କରି କହିଲା, "ଅହେ ନୀଳାଚଳନାଥ, ଅହେ ବଡ଼ଠାକୁରେ, ଅଗୋ ମା ସୁଭଦ୍ରା, କଲ୍ୟାଣୀର କାନ୍ତ [illegible] କର । ସେ ପୁଅ ପତି ଧରି ସୁଖରେ ଘର କରୁ । ତାହା [illegible]ତ ପ୍ରାଣେଶ୍ୱରଙ୍କୁ ସମର୍ପିବା ପାଇଁ ତ ମୁଁ ତୀର୍ଥ କରିବାକୁ ଆସିଚି ।"

ପଛେ ପଛେ ଯେଉଁ ଦୁଇ ଜଣ ଆସିଥିଲେ ତାଙ୍କ ଭିତରୁ ଜଣେ ଧାଇଁ ଆସି କୁଣ୍ଢାଇପକାଇ କହିଲା, "ଶାନ୍ତ ଅପା"! ଏପରି ନିତାନ୍ତ ଅପ୍ରତ୍ୟାଶିତ ସମ୍ବୋଧନରେ ଶାନ୍ତ ଦେବୀ ଅବାକ୍ ହୋଇଗଲେ । କିଛି ସମୟ ପରେ କହିଲେ, "କିଏ ତୁମେ, ମା ? ମୁଁ ପରା ଅନ୍ଧୁଣୀ; ନାଁ ନ କହିଲେ କଣ ଚିହ୍ନି-ପାରିବି ?"

"ମୁଁ ତୁମ ସାନ ଭଉଣୀ, ଅପା, ମୁଁ କଲ୍ୟାଣୀ; ଖୋଜି ଖୋଜି ଆଜି ଦୈବ ଘଟଣେ ତୁମକୁ ପାଇଛି । ତୁମକୁ ଏଠି ନ ପାଇ ସମସ୍ତେ କାଲି ସାକ୍ଷୀଗୋପାଳ ଯାଇଥାନ୍ତି ! କେହି କେହି କହିଲେ, ତୁମେ ସେଠାକୁ ଯାଇଥିବ । ମାଉସୀ ଆସିଛନ୍ତି ଯେ । ଆଜି କୁଆଡ଼େ ଖୋଜି ଲାଗିଥିବେ । ଆମେ ସବୁ ଆଠ ଜଣ ଆସିଛୁ । ତୁମକୁ କଟକପୁର ନେଲେ, ଯିବୁ ।"

"ତୁମେ କଲ୍ୟାଣୀ ? ମୁଁ କଣ ଦେଖିଛି କି ! ନାଁ ସିନା ଜାଣିଛି ।" କହି କଲ୍ୟାଣୀର ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ଦରାଣ୍ଡି ଦେଇଗଲେ । ପୁଣି କହିଲେ, "କେଡ଼େ ସୁନ୍ଦର ବୋହୂ ପିଲାଟିଏ ! କଲ୍ୟାଣୀ, ବାବୁ ଭଲ ଅଛନ୍ତି ତ ?"

"ନାଁ; ଆଜି ଭଲ କଣ ?"

"ନା !" ଶାନ୍ତ ଦେବୀ ଗୋଟାଏ ପଥର ମୂର୍ତ୍ତି ପରି କଠିଣ ପଡ଼ିଗଲେ । ପାଟିରୁ କଥା ବାହାରିଲାନାହିଁ । ସିଙ୍ଘା ବଜାଇଲେ ମଧ୍ୟ ଚେତନା ଆସିଲାନାହିଁ । ବଡ ଦେଉଳ ଉପାସ ଚହଲ ପଡ଼ିଗଲା । ବାଜା ବନ୍ଦ ହେଲା; ଚଉଁର ଅଳଟ ରହିଗଲା । ସମସ୍ତେ ମିଶି ଶାନ୍ତ ଦେବୀଙ୍କୁ ଟେକାଟେକି କରି

ଅରୁଣ ସ୍ତମ୍ଭ ନିକଟକୁ ଆଣିଲେ । ବାଟରେ ଲୋକମାନେ ଦେଖିଲେ କହିଲେ, "ମାତାର ଖୁବ ସୁକୃତ, ବଡ଼ ଏକାଦଶୀ ପର ଦିନରେ ବଡ଼ ଦେଉଳ ଭିତରେ ପାର ପାଇଗଲା ।" ବଡ଼ ଦେଉଳରେ ମହାସ୍ନାନ ହେଲା । ଏଣେ ମାଉସୀ ଅରୁଣ ସ୍ତମ୍ଭ ପାଖେ ଆସି ପହଞ୍ଚିଲେ । ଡାକିଲେ, "ଶାନ୍ତ, ଶାନ୍ତ ।" ଉତ୍ତର ଶୁଭିଲା କେବଳ ଗୋଟାଏ କ୍ଷୀଣ "ହୁଁ ।" ତା ମଧ୍ୟ ବେଶି ସମୟ ଶୁଭିଲା ନାହିଁ । ଅରୁଣ ସ୍ତମ୍ଭ ମୂଳେ ହିଁ ମଧ୍ୟାହ୍ନର ପ୍ରଚଣ୍ଡ ରୌଦ୍ର ମଧ୍ୟରେ ସୂର୍ଯ୍ୟ ଅସ୍ତ ହୋଇଗଲା ଘୋର ଅନ୍ଧକାର ଘୋଟି ଆସିଲା ।

---

ସମାପ୍ତ

କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ରାଧାନାଥ ରଥଙ୍କ ଦ୍ୱାରା ମୁଦ୍ରିତ—
୧୯୦୫

